# ଶ୍ରୀଲଣ୍ଡୁକେଶ ମାହାତ୍ମ୍ୟ



ଓ କାହ୍ନୁ ଚରଣ ଦାଶ

# ଶ୍ରୀ ଶ୍ରୀ ଲଡ଼ୁକେଶ ମାହାତ୍ମ୍ୟ



୰ କାହ୍ନୁଚରଣ ଦାଶ

ପ୍ରକାଶକ :
ଶ୍ରୀ ଦେବୀପଦ ନନ୍ଦ
ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ ଲିଃ
ଭୁବନେଶ୍ୱର

ଲେଖକ :
୰ କାହ୍ନୁଚରଣ ଦାଶ

ମୂଲ୍ୟ—କୋଡ଼ିଏ ଟଙ୍କା ମାତ୍ର

ମୁଦ୍ରଣ :
ରାଷ୍ଟ୍ରଭାଷା ସମବାୟ ପ୍ରେସ୍
ରାଷ୍ଟ୍ରଭାଷା ରୋଡ୍, କଟକ—୧
ଟେଲିଫୋନ୍—୬୦୧୭୩୮

# ଶ୍ରୀଲଡ୍ଡୁକେଶ ମାହାତ୍ମ୍ୟ

## ନୟାଗଡ଼—ଦେବୋତ୍ତର ବିଭାଗଦ୍ୱାରା ଅନୁମୋଦିତ

ବିଭାଗୀୟ କର୍ମକର୍ତ୍ତାବୃନ୍ଦ:—

ଏକଜିକ୍ୟୁଟିଭ ଅଫିସର—ଶ୍ରୀ ଯତୀନ୍ଦ୍ରନାଥ ଖୁଣ୍ଟିଆ O.A.S.
(ଏସ୍.ଡି.ଓ, ନୟାଗଡ଼)

ଦେବୋତ୍ତର ମ୍ୟାନେଜର—ଶ୍ରୀ ଜଗନ୍ନାଥ ଦାସ

ଶରଣକୁଳ ଅଫିସ କର୍ମଚାରୀବୃନ୍ଦ:—

ସୁପରଭାଇଜର—ଶ୍ରୀ ରାଜକିଶୋର ପଟ୍ଟନାୟକ

ମୋହରିର—ଶ୍ରୀ ସୁରେଶ କୁମାର ମିଶ୍ର

ମନ୍ଦିର ପରିଛା ଓ ପୁରୋଧା—ଶ୍ରୀ ରଘୁନାଥ ତ୍ରିପାଠୀ

ଚର୍ଚ୍ଚାପୃତ—ଶ୍ରୀ ତ୍ରିନାଥ ମହାପାତ୍ର

ପିଅନ—ଶ୍ରୀ ଉଦୟନାଥ କର, ମଙ୍ଗୁଳି ମହାପାତ୍ର, ଦୟାନିଧି ମହାପାତ୍ର,
ଲକ୍ଷ୍ମୀଧର ଦାଶ

ଅମିନ—ଶ୍ରୀ ଜଗନ୍ନାଥ ମିଶ୍ର

ପ୍ରକାଶ ସମିତି ଉଦ୍ୟୋକ୍ତା
ଶ୍ରୀ ରଘୁନାଥ ତ୍ରିପାଠୀ, ଶରଣକୁଳ, ଢିଙ୍ଗାରପଡ଼ା, ହରିହରପୁର ଶାସନ

# ଓଁ ନମଃ ଶିବାୟ

ପ୍ରଭୁ ଲଡ୍ଡୁକେଶଙ୍କର ଶରଣାପନ୍ନ ହୋଇ ଶରଣକୂଳରେ ଥିବା ସମୟରେ ପଣ୍ଡିତ ମହାଶୟ କବି ୬ [illegible]ଚରଣ ଦାସଙ୍କ ଦ୍ୱାରା ରଚିତ "ଶ୍ରୀଲଡ୍ଡୁକେଶ ମାହାତ୍ମ୍ୟ" ପ୍ରକାଶ ନିମିତ୍ତ ଆଗ୍ରହ ପ୍ରକାଶ କରିଲେ । ପ୍ରଭୁ ଶ୍ରୀଲଡ୍ଡୁକେଶଙ୍କୁ ସ୍ମରଣ କରି ଏ ଗୁରୁ ଦାୟିତ୍ୱ ବିନମ୍ର ଭାବରେ ବହନ କରିଥିଲି, ମନେ ମନେ ଭାବୁଥିଲି ପ୍ରଭୁ, ତୁମେ ସହାୟ ନ ହେଲେ ଏହା ପ୍ରକାଶ ହୋଇ ପାରିବ କି ? ତାଙ୍କର ଶୁଭାଶୀର୍ବାଦରୁ ଆଜି ରାଷ୍ଟ୍ରଭାଷା ସମବାୟ ପ୍ରେସ୍‌ର କର୍ମଚାରୀମାନଙ୍କର ସକ୍ରିୟ ସହଯୋଗରେ ଏହା ପ୍ରକାଶ ପାଉଛି । ପ୍ରଭୁ ଲଡ୍ଡୁକେଶଙ୍କର ଅପାର କରୁଣାରୁ ରାଷ୍ଟ୍ରଭାଷା ସମବାୟ ପ୍ରେସ୍ ଓ ତାହାର କର୍ମକର୍ତ୍ତା ଓ କର୍ମଚାରୀମାନଙ୍କର ଉତ୍ତରୋତ୍ତର ଉନ୍ନତି ହେଉ ଏତିକି ପ୍ରଭୁଙ୍କ ଚରଣରେ ବିନମ୍ର ନିବେଦନ ।

ଶିବରାତ୍ରି
୧୦-୩-୯୪

ବିନୀତ
ପ୍ରକାଶକ



୰ ଭାନ୍ଧୁ ଚରଣ ଦାସ

# ଶ୍ରୀ ଶ୍ରୀଲଡୁକେଶ ଦେବୋ ଜୟତି

## ମୁଖବନ୍ଧ

ଯୁଗେ ଯୁଗେ ଶାନ୍ତିକାମୀ ଅନୁସନ୍ଧିତ୍ସୁ ମାନବ ଶିଶୁ ବ୍ୟାକୁଳ ହୋଇଉଠେ ବୁଝିବାକୁ ସୃଷ୍ଟିର ରହସ୍ୟ । ନୟନକୋଣରେ ତାର ଜାଗି ଉଠେ ଶତ ପ୍ରଶ୍ନବାଚୀ, କିଏ ତାର ସ୍ରଷ୍ଟା ? କେଉଁଠି ତା ସ୍ଥିତି, ଅତନ୍ଦ୍ର ସାଧନା ତାର ଦେଇଯାଏ ତାକୁ ଏକ ସ୍ୱର୍ଗୀୟ ଚେତନା କଣ୍ଠେ କଣ୍ଠେ ଭାଷା ଦିଏ ସ୍ରଷ୍ଟା ତୋର ପରମେଶ୍ୱର, ସୃଷ୍ଟି ତାର ଈଶ୍ୱରଙ୍କର ଚପଳ ମାନବ ଅପଲକ ନୟନରେ ଭକ୍ତିପ୍ଳୁତ ଅନ୍ତରରେ ଲକ୍ଷ୍ୟକରେ ସର୍ବବ୍ୟାପୀ ପରମେଶ୍ୱରଙ୍କ ସତ୍ତା, ପ୍ରାଣହୀନ ପ୍ରସ୍ତର ମଧ୍ୟରେ ଅବା କାଷ୍ଠ ପ୍ରତିମା ମାଧ୍ୟମରେ । କେଉଁ ଆବାହମାନ କାଳରୁ ନୟାଗଡ଼ ଅନ୍ତର୍ଗତ ପୁଣ୍ୟ କ୍ଷେତ୍ର ଶରଣକୂଳ ଗ୍ରାମରେ ମହାମହିମ ଲଡୁକେଶ ଛଦ୍ମାକାର ବ୍ରହ୍ମଲିଙ୍ଗ ରୂପରେ ଆତ୍ମପ୍ରକାଶ କରିଛନ୍ତି ତାର ଇତିହାସ ନାହିଁ । ବର୍ତ୍ତମାନ ସମୟର କ୍ଷିପ୍ର ପରିବେଶ ପ୍ରମାଣ କରେ ପ୍ରଭୁଙ୍କର ସ୍ଥିତି ଓ ମାହାତ୍ମ୍ୟ ବହୁ ପୂର୍ବକାଳରୁ ପ୍ରଚଳିତ ବଂଶ ପରମ୍ପରା କ୍ରମେ ଭୂସମ୍ପତ୍ତି ଭୋଗ ବିନିମୟରେ ସେବାୟତମାନଙ୍କର ନିରଳସ ସେବା-ପୂଜାର୍ଚ୍ଚନାଦି ପୂର୍ବ ପରି ଉନ୍ନତ ଅକ୍ଷୁର୍ଣ୍ଣ । ଅଧୁନାପି ପ୍ରଭୁଙ୍କ ମାହାତ୍ମ୍ୟ ଜ୍ୱଳନ୍ତ ଅଗ୍ନିପିଣ୍ଡ ସମ ଜାଜ୍ୱଲ୍ୟମାନ । ସ୍ୱପ୍ନାଦେଶ ଅବା ଶୂନ୍ୟବାଣୀ ମାଧ୍ୟମରେ ଶତ ଶତ ଗୁହାରିଆ ପ୍ରଭୁ କରୁଣାମୃତ ଲାଭ କରୁଥିବାର ଚାକ୍ଷୁଷ ପ୍ରମାଣକୁ ଚିନ୍ତା କଲେ ହୃଦୟର ଭାବ ରୂପ ନିଏ ଧନ୍ୟ ପ୍ରଭୁ ! ଧନ୍ୟ ଲଡୁକେଶ !! ଧନ୍ୟ ତୁମ ଅପାର ମହିମା ।

ଦେବ ଭୂମି ଭାରତବର୍ଷର ଶ୍ରୀ କାଶୀବିଶ୍ୱନାଥ ବାବା ବୈଦ୍ୟନାଥ ରାମେଶ୍ୱର ଆଦି ବହୁ ତୀର୍ଥ ସ୍ଥାନ ଭ୍ରମଣ କରିଛି ଏବଂ ଅନୁଭବ କରିଛି ଯେ ସାରା ଭାରତବର୍ଷରେ ପ୍ରଭୁ ଲଡୁକେଶଙ୍କ ମାତ ନିୟମର ପଟାନ୍ତର ନାହିଁ । ପରନ୍ତୁ ଏହି ପୁରାତନ ମନ୍ଦିରଟି ପ୍ରଭୁଙ୍କର ଏକ ଲିପିବଦ୍ଧ କିମ୍ବଦନ୍ତୀରୁ ବଞ୍ଚିତ ହୋଇଥିବା ଅତ୍ୟନ୍ତ କ୍ଷୋଭର ବିଷୟ । ବହୁଦିନ ହେଲା ନାନାଦି ଧର୍ମଶାସ୍ତ୍ର ଆଲୋଚନା ପୂର୍ବକ ସ୍ଥାନର ସେବକମାନଙ୍କ ଠାରୁ ନାନା ତଥ୍ୟ ବୁଝି ଉକ୍ତ ମନ୍ଦିରର ପରୀକ୍ଷକ ଜ୍ଞାନବୃଦ୍ଧ ତଥା ବୟୋବୃଦ୍ଧ ପୁରୋଧା ଶ୍ରୀଯୁକ୍ତ ବିଶ୍ୱନାଥ ତ୍ରିପାଠୀ ମହାଶୟଙ୍କର ପରାମର୍ଶ ଓ ସାହଚର୍ଯ୍ୟ ଲାଭକରି ଦେବଙ୍କର ଯାବତୀୟ ବିଷୟାଦି ହୃଦୟଙ୍ଗମ କରିଛି । ଅନ୍ତରର ଭାବାବେଗ ସରଳ ପଦ୍ୟାକାରରେ ଆତ୍ମପ୍ରକାଶ କରେ ଶ୍ରୀ ଶ୍ରୀ ଲଡୁକେଶ ମାହାତ୍ମ୍ୟ ପୁସ୍ତକ ମାଧ୍ୟମରେ । ଏ ପୁସ୍ତକଟିକୁ ମୁଦ୍ରଣ କରିବା ନିମିତ୍ତ ମନ୍ଦିର କର୍ମଚାରୀମାନଙ୍କର ସାଧୁ ପ୍ରୟାସ ହାର୍ଦ୍ଦିକ ଧନ୍ୟବାଦାର୍ହ । ମୋର ବିଶ୍ୱାସ ବହିଟିର ମୁଦ୍ରିତ ରୂପ ମାଦଳାପାଞ୍ଜି ପରି ଅନନ୍ତ କାଳପାଇଁ ପ୍ରଭୁ ଲଡୁକେଶଙ୍କ ମାହାତ୍ମ୍ୟକୁ ଭକ୍ତମାନଙ୍କ ମଧ୍ୟରେ ଅମ୍ଳାନ କରି ରଖିଥିବ । । ଇତି ।

୬ କାହ୍ନୁଚରଣ ଦାଶ

ଶରଣକୂଳ, ଭିଖାରିପଡ଼ା ହରିହରପୁର ଶାସନ

ଦୀର୍ଘଦିନର ଉପାସନା ପରେ ଫଳପ୍ରାପ୍ତି ନ ହୋଇ ଅଭିମାନୀ ଭକ୍ତ ଯେତେବେଳେ ସ୍ୱହସ୍ତରେ ସ୍ୱ କଣ୍ଠଦେଶ ଅବା ଜିହ୍ୱା ପ୍ରଦେଶରେ ଘୋର ଶସ୍ତ୍ରାଘାତ କରେ ସେତେବେଳେ ଭୋଳାନାଥଙ୍କର ଅଗାଧ କରୁଣା ସାଗର ଭକ୍ତର ଈପ୍ସିତ ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ସଙ୍ଗେ ସଙ୍ଗେ ମୁହୂର୍ତ୍ତକ ମଧ୍ୟରେ କ୍ଷତସ୍ଥାନର ଉପଶମ ଆଣି ଦିଏ । ଆଉ କ୍ଷତ ସ୍ଥାନେ ଦେଇଯାଏ ଏକ କ୍ଷୁଦ୍ର ସରଳ ସଙ୍କେତ ଯାହାକି ବିଜ୍ଞ ମାନବଙ୍କୁ ଆଶ୍ଚର୍ଯ୍ୟର ଅତଳ ଗହ୍ୱରକୁ ଟାଣି ନିଏ ।

# ଓଁ ନମଃ ଶିବାୟ

## ଅଭିମତ

୰ କୃଷ୍ଣଚରଣ ଦାଶ ଭିଖାରିପଣ୍ଡାଙ୍କର ଶ୍ରୀ ଲଙ୍କେଶ ମାହାତ୍ମ୍ୟ (ଶ୍ରୀ ଶ୍ରୀ ଲଙ୍କେଶ ମହେଶଙ୍କ ମନ୍ଦିର ଇତିହାସ ଗୀତ, ପର୍ବ ପର୍ବାଣୀ ସମ୍ବନ୍ଧେ) ଆମୂଳ ଚୂଳ ପାଠକରି ପରମ ପ୍ରୀତି ଲଭିଲି ।

ଏହି ମନ୍ଦିରର ପରିଚ୍ଛା (ତତ୍ତ୍ୱାବଧାରକ) ମାତଙ୍ଗ ରୂପେ ନୟାଗଡ଼ର ଭୂତ ପୂର୍ବ ରାଜାସାହେବ ଶ୍ରୀ କୃଷ୍ଣଚନ୍ଦ୍ର ସିଂହ ମାନଧାତାଙ୍କ ସମୟରୁ କାର୍ଯ୍ୟକରି ଆସିଛି ।

ଶ୍ରୀ ଶ୍ରୀ ଲଙ୍କେଶ ମହେଶଙ୍କର ମାହାତ୍ମ୍ୟ ନିଜେ ଅନୁଭବ କରିବା ସଙ୍ଗେ ସଙ୍ଗେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଠାରୁ ଶୁଣିବାକୁ ମଧ୍ୟ ପାଇଅଛି । କିନ୍ତୁ ପ୍ରତ୍ୟକ୍ଷଦର୍ଶୀଭାବେ ଜାଣି ପାରିଛି ଯେ ବହୁ ଦୂର ଆଗତ ଭକ୍ତ ଗୃହାଦିଅମାନେ ନିଜ ଶରୀରର ଅଂଶ ବିଶେଷ ଯଥା ଜିହ୍ୱା, କଣ୍ଠ, ସ୍ତନ ଇତ୍ୟାଦି କର୍ତ୍ତନ କରି ଠାକୁରଙ୍କ ଅନୁଗ୍ରହରୁ ବରପ୍ରଦ ହୋଇଥାନ୍ତି । ଏହି କାମନା ଲିଙ୍ଗଙ୍କୁ ଉପାସନା କରି କେହି ହେଲେ ନିଷ୍ଫଳ ମନୋରଥ ହୋଇ ନାହାନ୍ତି ।

ଏହା ଶୈବ କ୍ଷେତ୍ରରୂପେ ପରିଚିତ ହେଲେହେଁ ଲିଙ୍ଗ ଦୁଇଭାଗରେ ବିଭକ୍ତ ହୋଇ ହରିହର ରୂପେ ପରିଚିତ ହୁଅନ୍ତି । ହରିହରଙ୍କର ଏକଷ ଏକ ମନ୍ତ୍ରରେ ପୂଜା କରାଯାଏ ।

ଏହି ପାଣ୍ଡୁଲିପିର ପ୍ରତ୍ୟେକ ଲେଖା ଅତ୍ୟନ୍ତ ଉପାଦେୟ ଓ ମୌଳିକ ଭାବଧାରାରେ ପର୍ଯ୍ୟବସିତ । ଏହା ସରଳ ଓ ସୁବୋଧ୍ୟ ହୋଇଥିବାରୁ ଯେ କେହି ପାଠକରି ଉପକୃତ ହେବେ । ଆଜି ପର୍ଯ୍ୟନ୍ତ ଏପରି ଲେଖା ପ୍ରକାଶିତ ହୋଇ ନଥିବାରୁ ଏହା ପ୍ରଥମ ସଂସ୍କରଣ ରୂପେ ଗ୍ରହଣ କରାଯିବ ଏଥିରେ ସନ୍ଦେହ ନାହିଁ ।

ଏହାକୁ ପ୍ରତ୍ୟେକ ଧର୍ମପ୍ରାଣ ବ୍ୟକ୍ତି ଆଗ୍ରହ ସହକାରେ ପାଠକରି ପରମ ଆନନ୍ଦ ଲାଭ କରିବେ ବୋଲି ମୋର ଦୃଢ଼ ଆଶା ଏବଂ ବିଶ୍ୱାସ ।

ବୁଦ୍ଧପୂର୍ଣ୍ଣିମା
ମଙ୍ଗଳବାର
ତା ୧୫ । ୫ । ୮୪

୰ ବିଶ୍ୱନାଥ ତ୍ରିପାଠୀ
ମନ୍ଦିର ପରିଚ୍ଛା, ପୁରୋଧା, ମାତଙ୍ଗ
ଶରଣକୁଳ

ସେତୁ ବନ୍ଧ ବାନ୍ଧିବାରେ କ୍ଷୁଦ୍ର ଗୁଣ୍ଡୁଚିଟି ପ୍ରଭୁ ଶ୍ରୀରାମଙ୍କୁ ଯେପରି ସାହାଯ୍ୟ କରିଥିଲା ସେହିପରି ଲଙ୍କେଶ ମହାତ୍ମ୍ୟ ରଚନାପାଇଁ ମୋର ସାମାନ୍ୟ ଜ୍ଞାନ ତଥା ଅନୁଭୂତିରୁ କିଛି ତଥ୍ୟ ଯୋଗାଇ ପାରିଥିବାରୁ ନିଜକୁ ଧନ୍ୟ ମନେ କରୁଛି ।

# ସୂଚୀ

୧ମ ଭାଗ
ସ୍ତବ ଶ୍ଳୋକ
ଶୈବ ପୀଠେ ପଞ୍ଚଦେବତା ସ୍ଥିତ
ସ୍ତୁତି ପଦ୍ୟ
ଉତ୍ପତ୍ତି
ମନ୍ଦିର ନିର୍ମାଣ
ମନ୍ଦିର ବର୍ଣ୍ଣନା
୨ୟ ଭାଗ
ଦୈନିକ ନୀତି
ପ୍ରଭାତ ଅବକାଶ
ବଲ୍ଲଭ ସୂର୍ଯ୍ୟପୂଜା
ଦ୍ୱାରପାଳ ପୂଜା
ବାଟାଙ୍କ ବଲ୍ଲଭ
ପାର୍ଶ୍ୱ ଓ ବେଢ଼ା ଦେବତା
ପଞ୍ଜିକା ପଠନ
ଢଭାଳ ଧୂପ
ସୁଆର ପୁଡ଼ା ଭୋଗ
ମାଳ ପୁଡ଼ା ଭୋଗ
ଷିବଭିଷେକ ନୀତି
ଦ୍ୱି ପ୍ରହର ଧୂପ
ସନ୍ଧ୍ୟାଳତି (ଟେରପିଟା)
ସଞ୍ଜ ନୀତି
ସଂଜ ଧୂପ
ଚତୁଃସମ ନୀତି
ବଡ଼ ସିଂହାର
୩ୟ ଭାଗ
ସୋମବାର ବେଢ଼ା
ଚତୁର୍ଦ୍ଦଶୀ ବେଢ଼ା
ଚତୁର୍ଦ୍ଦଶ ଯାତ୍ରା
ଅଷ୍ଟମୀ
କରଣ ଷଷ୍ଠୀ
ପୁଷ୍ୟାଭିଷେକ
ମକର ସଂକ୍ରାନ୍ତି
ଚନ୍ଦ୍ରଭାଗା ସପ୍ତମୀ (ମାଘ ସପ୍ତମୀ)
ଶିବରାତ୍ରି
ଅଶୋକାଷ୍ଟମୀ
ଦମନକ ଚତୁର୍ଦ୍ଦଶୀ
ଅକ୍ଷୟ ତୃତୀୟା
ପରଶୁରାମା ଷ୍ଟମୀ
ଶ୍ୱେନକ ଚତୁର୍ଦ୍ଦଶୀ
ଚନ୍ଦନ ଲେପଣ
ଯମ ଦ୍ୱିତୀୟା
ଛତ୍ରସ୍ଥାପନ ଚତୁର୍ଦ୍ଦଶୀ
୪ର୍ଥ ଭାଗ ଯାନିଯାତ୍ରା
ଶ୍ରୀପଞ୍ଚମୀ
ଚର୍ଚ୍ଚରି (ଝୁଟେରୀ)
ଦୋଳ ଯା'ତ
ଦୁଣ୍ଡଖେଳ
ଭଉଁରି ଯାତ୍ରା
ଶିବ ବିବାହ
ଶୀତଳ ଷଷ୍ଠୀ
ଚତୁର୍ଥୀ ଯାତ୍ରା
ସପ୍ତ ମଙ୍ଗଳା
ଗୁଡ଼ଖାଇ ଯମଦ୍ୱିତୀୟା
ଦଶହରା
ଝୁଲଣ ଯାତ୍ରା
ହର ଜନ୍ମାଷ୍ଟମୀ
କାର୍ତ୍ତିକ ପଞ୍ଚକ
ରାସ ପୂର୍ଣ୍ଣିମା ବେଶ

ଶ୍ରୀରାମ ନବମୀ
ଶ୍ରୀଗୁଣ୍ଡିଚା
୫ମ ଭାଗ ପୁଣ୍ୟପର୍ବ
ଭିତର ଚନ୍ଦନ
ବସୋଢାସ
ଛଚାଲଗି
ସପ୍ତପୁରୀ
ନବାନ୍ନ
ଦୁତିଆ ଓଷା
ନବାଙ୍କ ବେଢ଼ା
ଧନୁ ମୁଆଁ
ଦୀପାବଳୀ
ବ୍ୟଞ୍ଜନ ଦ୍ୱାଦଶୀ
ଶ୍ରୀଗଣେଶ ଚତୁର୍ଥୀ
ନବ ପତ୍ରିକା
ମଙ୍ଗଳବାର (ଦେବୀ ଧୂପ)
ଗୁରୁବାର (ଲକ୍ଷ୍ମୀ ପୂଜା)
ଗ୍ରହଣ
ଶାଢ଼ୀ ଲଗି
୬ଷ୍ଠ ଭାଗ ଖଞ୍ଜାବାଡ଼ି
ମାଳ ସେବା
ଘଣ୍ଟା ସେବା
ବ୍ରାହ୍ମଣ ସୁଆର ସେବା
ଶୂଦ୍ର (ଗୃହସ୍ଥ) ସୁଆର ସେବା
ପ୍ରତିହାରୀ ସେବା
ପରୀକ୍ଷକ କାର୍ଯ୍ୟ
ପୁରୋହିତ
ଚର୍ଚ୍ଛାପୁତି
ଦ୍ୱାରୀ (ପାଇକ) ସେବା
ଗରୁଡ଼ ସେବା
ନାପିତ ସେବା
ତେଲ ସେବା
କୁମ୍ଭାର ସେବା
ଚନ୍ଦ୍ର (କାହାଳିଆ ସେବା ।

ଗୀତ ଗୋବିନ୍ଦ ସେବା
ପର୍ବ ପୂଜକ
ଚଣ୍ଡୀ ପାଠକ
ପାନେରୀ ସେବା
ପାଟରୀ ସେବା
ବଣିଆ ସେବା
ବଢ଼େଇ ସେବା
କମାର ସେବା
ଚଷା ସେବା
ଛତ୍ରକାର ସେବା
ବେଠି ଅଠିକା
ବୁଣାକାର
କାଠୁରିଆ
ଚୁନରା
କଣ୍ଠ ସେବା
ଚନ୍ଦନ ପୁରୀ ଘଣ୍ଟା
ତୀର୍ଥ ସାକ୍ଷୀ
ଧୋବା ସେବା
ମେହେନ୍ତ୍ରର ସେବା
ଛଞ୍ଜର ସେବା
ଦରଜି ସେବା
ଟଣକ ସେବା
୭ମ ଭାଗ ମହିମା
ମନ୍ଦିର ଅଫିସ
ସର୍ପାଘାତ ମନ୍ତ୍ର
ଲଡ଼ୁ ପଣ୍ଡା କାହାଣୀ
ରାଜଗୃହେ ପ୍ରବଳଲକ୍ଷ
ଅଳ୍ପାୟୁ ଦୀର୍ଘାୟୁଷ୍
ଭଞ୍ଜକବି
ସଦାନନ୍ଦ ବ୍ରହ୍ମା
କଣ୍ଠ ସୂର୍ଯ୍ୟ
ଯଦୁମଣି
ଅନୁଶରଣ
ଗ୍ରନ୍ଥାକାର ପରିଚୟ

# ଶ୍ରୀଲଡୁକେଶ ମହାତ୍ମ୍ୟ

## ପ୍ରଥମ ଭାଗ

### ସ୍ତବ

ଯଦ୍ ବୃନ୍ଦାରକବୃନ୍ଦବନ୍ଦ୍ୟମଘବନ୍ମୌଳୀନ୍ଦ୍ର ନୀଳଶ୍ରିୟା ।
ସ୍ୱସ୍ୱନ୍-ଶାଣିତ ରୀଡଭିଃ ପ୍ରଣତଭିର୍ଗୌରେଃପି କୃଷ୍ଣତ୍ୱଷା ॥
ସଂପ୍ରାପ୍ତୋ ଦମ୍ଭନୀଳନୀରଜରୁଚିଂ ଧିକ୍କତୀ ଯଦ୍ ସ୍ୱଷତେ ।
ତଚ୍ଛି୍ରମଦ୍ ବ୍ରହ୍ମଲିଙ୍ଗଃ ଶ୍ରିୟ ମନୁତାଂ ନଃ ସଦା ଲଡୁକେଶଃ ॥

### ଶୈବପୀଠେ ପଞ୍ଚ ଦେବତା ସ୍ଥିତ

ମଧ୍ୟେ ସଂସ୍ଥାପ୍ୟ ସମ୍ୟ କ୍କଳକଳୁଷ ହରଂ ସ୍ୱେଷ୍ଟଦଂ ଶୂଳପାଣିଂ ।
ଯାମ୍ୟେ ଶ୍ରୀ ପାର୍ବତୀଜଂ ଖଳୁ ଧନ ପଦଶେ ଶ୍ରୀ ରମା ବଲ୍ଲଭଂ ଚ ॥
ଐଶାନ୍ୟେ ଶୈଳ ଜାତାଂ ଭବ ଭୟ ସକଳ ଚ୍ଛେଦନୀଂ ସିଦ୍ଧି ଦାତ୍ରୀଂ ।
ସୂର୍ଯ୍ୟଂ ତ୍ୱାଗ୍ନେୟ କୋଣେ ବିବଧ ବିଧି ଯୁତୈଃ ପୂଜୟେଚ୍ଛୈବ ପୀଠେ ॥

### ଶିବ ସ୍ତୁତି

ବଂବଂ ଭୋଳାଲିଙ୍ଗ ଅକରମ ଶିଳା ।
ପାଂଶୁ ବୋଲା କଳେବର କାଳକୁଟ ଗିଳା ॥
ନଣା ମଶାଣି ଭ୍ରମଣ ନପଟ ଲଙ୍ଗଳା ।
ସଙ୍ଗରେ ଥାନ୍ତି ବଲ୍ଲଭୀ ସରବ ମଙ୍ଗଳା ॥
ଗଳେ ହାଡ଼ ମାଳା ଦୋଳେ ବୁଢ଼ା ହଡ଼ା ଗଡ଼ା ।
ବାଜଇ ଡ଼ମ୍ବରୁ ହାତେ ତାମ୍ବଡ଼ା ତାମ୍ବଡ଼ା ॥
ଭୂତ ବେତାଳ ପିଶାଚ ଗଣ ଥାନ୍ତି ବେଢ଼ି ।
ନାଚୁଥାନ୍ତି କଳ କଳା ରବେ ଭୟ ଏଢ଼ି ॥
ବେକେ ହାତେ ଗୋଡ଼େ ନାଗ ସାପ ଥାନ୍ତି ଘେର ।
କେ ନ ଡ଼ରବ ତୁମ୍ଭର ମୂରତକ ହେର ॥
ବାହାରେ ମନ୍ଦ ଭିତରେ ସଦାନନ୍ଦ ଯୋଗୀ ।
ଭକତ କାମନା ପୂର ବ୍ରହ୍ମାନନ୍ଦ ଭୋଗୀ ॥
ତବ ରଜୀବ ଚରଣ ଯୁଗଳେ ଶରଣ ।
ସୁମରେ ନାମକୁ ଆଜନମୁଁ ଆମରଣ ॥

# ଉତ୍ପତ୍ତି

ଜୟ ହେ ଗଉରୀ ବର ଅନାଦି ଶଙ୍କର ।
ଦକ୍ଷ ଯଜ୍ଞ କ୍ଷୟ କାରୀ ଶ୍ରୀଲଡ଼ୁକେଶ୍ୱର ॥

ତବ ଉତପତ୍ତି ନାଥ, କହୁ ଅଛି ମନେ– ।
ଭାବି ଯାହା କିମ୍ବଦନ୍ତୀ ଶୁଣି ଅଛି କର୍ଣ୍ଣେ ॥

କଇଲାସ ଗିରି ଶିଖେ ଭବାନୀ ଶଙ୍କର ।
ଭାବ କୁତୂହଳେ ବସିଛନ୍ତି ଦିନକର ॥

ଆଗେ ନନ୍ଦୀ କାଳ-ଦ୍ୱାରୀ ଯୋଡ଼ି ବେନିକର ।
ପାଶେ ଅଛନ୍ତି ସାଧକ ସନ୍ୟାସୀ ନିକର ॥

ବାହାରୁ ଶୁଭିଲ ଗଣ୍ଡଗୋଳ ବେନି ବାଳ ।
ଆସି ଗଲେ ଗଣପତି–କାର୍ତ୍ତିକ ତତ୍କାଳ ॥

କାର୍ତ୍ତିକେୟ କହୁଛନ୍ତି ଶୁଣ ତାତ ମାତଃ ।
ଅକାରଣେ କଳି କରେ ମୋରେ ଗଣନାଥ ॥

ବୋଲେ ତୁହି ହେଲେ ଭାଇ ବଳୁଆ ବଳରେ ।
ହଟାଇ ଦେବି ମୁଁ ତୋତେ ମୋ ସ୍ଥାନ ବଳରେ ॥

ବୋଲନ୍ତି ଗଣେଶ କାର୍ତ୍ତିକେୟ କହେ ମୋତେ ।
ରଖିଥାତୋ ସ୍ଥାନ, ବଳେ ମାରି ଦେବି ତୋତେ ॥

ଶୁଣି ଶିବ ଶିବା ହସି କହନ୍ତିଁରେ ବାଇ ।
ବୃଥାଟାରେ କଳିକର ହୋଇ ଦୁଇ ଭାଇ ॥

ଯାଅ ପୃଥିବୀକି ବୁଲି ଆସିବ ଯେ ଆଗ ।
ଅମୃତ ଲଡ଼ୁ ଏ ତାର ପୁରସ୍କାର ଭାଗ ॥

ଶୁଣି ଷଡ଼ାନନ ଚଢ଼ି ମୟୂର ବାହନ ।
ବାହାରିଲେ ବସୁମତୀ କରି ପର୍ଯ୍ୟଟନ ॥

ଜମ୍ବୁ ପ୍ଲକ୍ଷ-କୁଶ-କ୍ରୌଞ୍ଚ-ଶାଲ୍ମଳୀ ଶାକ ।
ସାକଲ୍ୟ ସପତ ଦ୍ୱୀପ ଭ୍ରମି ଭୂମି ଯାକ ॥

ଦଧି ଦୁଗ୍ଧ ଘୃତ ସୁର ଇକ୍ଷୁ ଲୁଣି ଜଳ ।
ସପତ ସମୁଦ୍ର ଗମି ଫେରିଲେ ଚଞ୍ଚଳ ॥

ଦେଖିଲେ ଗଣେଶ ପିତା-ମାତା ଘୂରିପାଶେ ।
ବୁଲୁଛନ୍ତି ମୂଷାଟିରେ ଚଢ଼ି ଏକା ଲକ୍ଷେ ॥

ବୋଇଲେ ପୃଥିବୀ ବୁଲି ଆସିଲି ମୁଁ ଧାଇଁ ।
ଦେଖୁଛି ଏଠାରୁ ତୁମ୍ଭେ ଯାଇ ନାହିଁ କାହିଁ ॥

ଗଣେଶ ଭାଷି ବୁଲିଲ ଥରେ ଏ ଧରଣୀ ।
ସଚରାଚର ବ୍ରହ୍ମାଣ୍ଡ ଯାହାର କରଣୀ ॥

ଭାବ ପୃଥିବୀ ଠାବରୁ କେତେ କୋଟି ଗୁଣ ।
ତାଙ୍କ ଚଉପାଶେ ଶତ ବାର ପ୍ରଦକ୍ଷିଣ ॥

କରି ସାରିଲିଣି ତୁମ ଆସିବା ଆଗରୁ ।
ବୃଥାଟାରେ ବସୁନ୍ଧର ବୁଲୁଛ ଭାଗରୁ ॥

ଅଙ୍ଗ ବଳ ଜ୍ଞାନ ବଳ କିଏ ଏଥି ସାର ।
ଦିଅ ସୁଧା ଲଡ଼ୁ ବାବା ! ମୋର ପୁରସ୍କାର ॥

ଶୁଣି କାର୍ତ୍ତିକେୟ ମନେ ଭାଳି କଲେ ଠିକ ।
ଦେହ ବଳଠାରୁ ବୁଦ୍ଧି ବଳଟି ଅଧିକ ॥

ପୃଥିବୀକି ବୃଥା ବୁଲି ହୋଇଲି ହାଲିଆ ।
ସୃଷ୍ଟିକର୍ତ୍ତା ପିତା ପାଶେ ଭ୍ରମି ଭ୍ରାତା ଠିଆ ॥

ହର ଦୁର୍ଗା ଅନ୍ତର୍ଗତେ ସ୍ଥିର କଲେ ଭାବି ।
ପ୍ରକୃତରେ ପୁରସ୍କାର ଗଣେଶର ଦାବୀ ॥

କହି ଦେଇଥିଲି ସିନା କଥା କୁତୂହଳେ ।
କାହିଁ ଅମୃତ ଲଡ଼ୁକୁ ପାଇବିକି ବଳେ ॥

'ରହ ଦେବା' କହି ପଳାଇଲେ ଦିଗମ୍ବର ।
ଦିଅ ଲଡ଼ୁ ବାବା ବୋଲି ଧାଇଁ ଗଣେଶ୍ୱର ॥

ଲସର ପସର ଥୋର ପାହାରକୁ ଚାପି ।
ଅତଳ ପେଟକୁ ହାତେ ଧରିଛନ୍ତି ଘୁପି ॥

ହାଲିଆ ହୋଇ ପଛରେ ନପାରିଲେ ଯାଇ ।
ମହେନ୍ଦ୍ର ପର୍ବତ ତଳେ ଲୁଚି ଉମା ସାଇଁ ॥
ରହିଲେ ଏକାନ୍ତେ ବନ ଲତାର ଭିତରେ ।
ହରି ବ୍ରହ୍ମା ପୁରନ୍ଦର ଚିନ୍ତିଲେ ଚିତ୍ତରେ ॥

ଜାଣି ପ୍ରବେଶ ହୋଇଲେ ଆସି ଦେବ ସର୍ବ ।
କହିଲେ ପୂର୍ବ ଚରିତ ଦେଖି ଉମା ଧବ ॥

ତହୁଁ ସୁର ଗଣେ ଦେବ ଭଣ୍ଡାନ୍ତୁ ଅମୃତ ।
ଅଣାଇଁ ଲଡ଼ୁ କରିଣ ଦେଲେ ହର ହାତ ॥

ଡକାଇ ଗଣେଶଙ୍କୁ ତା ଆନନ୍ଦରେ ଦେଲେ ।
ଭୁଞ୍ଜି ଗର୍ଭ ଜନ୍ମ ଜରା ମୃତ୍ୟୁ ପାର ହେଲେ ॥

ଦିଅ ଲଡ଼ୁ ବାବା ବୋଲି ଯାହା ଡାକୁ ଥିଲେ ।
ଲଡ଼ୁ ପରି ଶିଳା ଦିଅଁ ଲଡ଼ୁ ବାବା ହେଲେ ॥

ଦକ୍ଷିଣରେ ଋଷିକୁଲ୍ୟା ଉତ୍ତରରେ ଉପଲା ।
ଉଭୟ ଅଚଳା ମଧ୍ୟ ଗତ ପୁଣ୍ୟ ସଲା ॥

ମହେନ୍ଦ୍ର ପର୍ବତ ଅଂଶ ଭଣ୍ଡାର ଶିଖରୀ ।
ପାଦ ଦେଶେ ପ୍ରବାହିତା କୁସୁମୀ ନିର୍ଝରୀ ॥

ପବିତ୍ର ନିଭୃତ ସ୍ଥାନ ଭାବି ଲଡ଼ୁକେଶ ।
ପୃଥିବୀ ପୃଷ୍ଠରେ ଛତ୍ର ଆକାରେ ମହେଶ ॥

ପାତାଳୁଁ ଫୁଟି ପାଷାଣ ବିଗ୍ରହେ ରଞ୍ଜିତ ।
ପର୍ବତ ବୃକ୍ଷ ଲତିକା ମଧ୍ୟେ ଲୁକ୍କାୟିତ ॥

କାଳ ଚକ୍ର ଘୂର୍ଣ୍ଣ ଅଛି କେ ପାରିବ କହି ।
ଅପରିଚୟରେ ବହୁ କାଳଗଲା ବହି ॥

ସେହି ନିକଟେ "ଶରଣକୁଟ" ପଲ୍ଲୀ ଗାଆଁ ।
ତହିଁ ସାହୁକାର ନାମେ ପଦ୍ମେ ଏକ ନାଆଁ ॥

ଧନ ଧାନ୍ୟ ସୁନା ରୂପା ରତନେ ତା' ପୁର ।
ଗୋ ମହିଷି ଛାଗ ମେଷ ଆଦି ଭରପୁର ॥

କପିଳା ନାମରେ ଏକ ତାର କାଳୀ ଗାଈ ।
ଜନମାଇଁ ଥାଇ ସେହି କଇଁପିଲା ମାଈ ॥

ଦୁହିଁଲେ ଗଉଡ଼ ନପିଟଇ ଘୁରି ଚିର ।
'କେ' ଦେଖିନି ପିଲଟିକି ଖୁଆଏ ବା କ୍ଷୀର ॥

ଗୋଠେ ଗଲାବେଳେ ପଛା ଫାଟି ପଡ଼ୁଥାଇ ।
ଲେଉଟି ଆସିଲା ବେଳେ ଶ୍ୱେତଲା ଦିଶଇ ॥

(କେବଣ କଥା ଗୋପାଳ ଜାଣି ନ ପାରଇ )
ଟଲା କେତେ ଦିନ ନିତି ନିତି ଜଗି ଥରେ ।
ଦେଖିଲା ପର୍ବତ ତଳେ ବର୍ତ୍ତୁଳ ପଥରେ ॥

ପଛ ଖୁର ଦୁଇ ରଖି ଗାଈ ଶିଳା ପ୍ରାନ୍ତେ ।
ଘୁରି ଚିର କ୍ଷୀର ଧାର ଡାଳଇ ଏକାନ୍ତେ ॥

ଦେଖି କୋପରେ ଗୋପାଳ ହୋଇ ଥର ହର ।
ବେନି ବାର ପ୍ରହାରିଲା ସୁରଭୀ ଉପର ॥

ଭୟରେ ଧେନୁ ଦଉଡ଼ି ବେଗେ ପଳାଇଲା ।
ଖୁର ବାଜି ବେନି ପାଶ ପାଷାଣ ଭାଜିଲା ॥

ପିଚିକା ପରି ବହିଲା ରକ୍ତ ଦୁଇ ପାଖ ।
ଲାଲ ହୋଇଗଲା ଗଛ ପତ୍ର ଲତା ଯାକ ॥

ଛାନିଆ ହୋଇ ଗାୟାଳ ଗାଆଁକୁ ଅସିଲା ।
ସାଉ ପଦ୍ମୋଶୀଙ୍କ ଆଗେ ସକଳ ଭାଷିଲା ॥

ଶୁଣି ସର୍ବେ ମିଛ ବୋଲି ଦିଅନ୍ତେ ଉଡ଼ାଇ ।
ଡାକଇ ଗଉଡ଼ ଆସି ସତେ ଦେଖ ଭାଇ ॥

ଜଣ କେତେ ଚଳି ଯାନ୍ତେ ଗୋପାଳ ସଙ୍ଗତେ ।
ପ୍ରତ୍ୟକ୍ଷ୍ୟେ ଦେଖି ଚାଟକା ହୋଇଲେ ସମସ୍ତେ ॥

କିଂଭୂତ ଏ କିମାକାର କିଛି ନ ଜାଣିଲେ ।
ଲେଉଟାଣି ଆସି ମନେ ପ୍ରମାଦ ଗଣିଲେ ॥

ସେତେବେଳେ ନୟାଗଡ଼ ରାଜ୍ୟ ନାମ ଗନ୍ଧ ।
ନ ଥିଲା ଏ ରାଜଧାନୀ ବିପୁଳ ସମ୍ବନ୍ଧ ॥

ଥିଲା ଏ ଶରଣକୁଳ ରାଜ୍ୟ ରଣପୁର ।
ବଣ ଜଙ୍ଗଲରେ ହୋଇଥିଲା ଭରପୂର ॥

କନ୍ଧ କୁର୍ମି ଧଳ ଶୋଧ ଆଦି ଆଦି ଜାତି ।
କରିଥିଲେ ଏହି ସ୍ଥାନେ ମାନବେ ବସତି ॥

ଅଳ୍ପ ପରିମାଣେ ଥିଲେ ଘୁରି ଜାତି ଶୁଦ୍ର ।
ଭଣ୍ଡାରି ଗୁଡ଼ିଆ ଗୌଡ଼ ମାଳି ତାଙ୍କ ମଧ୍ୟ ॥

ଠାକୁରଙ୍କ ପୂର୍ବ କଥା ରଜାଙ୍କୁ ଜଣାଇ ।
ଶୂଦ୍ର ଜାତି ସେବା କଲେ ଲୋକଙ୍କୁ ମଣାଇ ॥

ସେମାନେ ନାଗ ଧରମୀ ନାଗ ସଗୋତ୍ରିୟ ।
ରଜ ଇଷ୍ଟଦେବ ମଧ୍ୟ ମଣିନାଗ ଦିଅଁ ॥

ନାଗସାପ ଚେକା ବାନ୍ଧି ବାର ପରକାର ।
ଦେଖି ଠାକୁରଙ୍କୁ ନାମ ଦେଲେ ନାଗେଶ୍ୱର ॥

ଏହିପରି ବହୁ କାଳ ହେଲା ବହିର୍ଗତ ।
ନକୁଳିନ୍ ପାଶୁପତ ଶଇବେ ଆଗତ ॥

ଥିଲେ ତାଙ୍କ ମଧ୍ୟେ ପଣ୍ଡା ପାର୍ଡ଼ି ପର୍ଛି ଦ୍ୱିଜ ।
ଦେଖାଇ ଅହି ନକୁଳ ସମ୍ବନ୍ଧ ପହିଲ ॥

ପୂର୍ବ ସେବା ରଖି ନିଜେ କଲେ ଅଧିକାର ।
ନାଗେଶ୍ୱର ନାମ କାଟି ଶ୍ରୀନକୁଳେଶ୍ୱର ॥

ଲଗୁଡ଼ ସନ୍ତକ ଥିଲା ସେହି ଶୈବଙ୍କର ।
ତେଣୁ ନାମ ଦେଲେ ଲଗୁଡ଼ଇଶ୍ୱର ॥

ଏମନ୍ତେ ତହୁଁ ବହୁ କାଳ ଗଲା ବହି ।
ନୂଆଗଡ଼ ନାମେ ରଜ୍ୟ ହେଲା ଏହି ମହୀ ॥

ଦିନେ ନବ ଦୁର୍ଗ ନୃପେ ସ୍ୱପ୍ନ ହେଲା ରତି ।
"ଆସି ଦେଖିବୁ ରଜନ ତୁ କାଲି ପାହାନ୍ତି ॥

ଲଡ଼ୁବାବା ନାମେ ଆମେ ଶରଣକୂଳରେ ।
ଭଣ୍ଡାର ମୁଣ୍ଡିଆ ତଳେ କୁସୁମୀ କୂଳରେ ॥

ଛତ୍ରାକାର ବ୍ରହ୍ମ ଲିଙ୍ଗ ଶିବା ଅବତାର ।
ପାତାଳ ଫୁଟନ୍ତା ଶମ୍ଭୁ ଦେଖ ଧାତିକାର ॥

ଲଡ଼ୁ ପରି ଦିଶିବାରୁ ଆମ୍ଭର ଉପର ।
ତେଣୁ ନାମ ବୋଲାଇବୁ ଶ୍ରୀଲଡ଼ୁକେଶ୍ୱର ॥

ଯାହା ଘଟଣା ଘଟିଛି ବୁଝିବୁ ଏଠାରେ ।
ତେଣିକି ଯାହେବ କରି ଯିବୁତୁ ନିଷାରେ ॥

ଶୁଣି ରଜା ପ୍ରଭାତରୁ ସାରି ନିତ୍ୟ କର୍ମ ।
ଶରଣକୂଳେ ପ୍ରବେଶ ସୁମରିଣ ଧର୍ମ ॥

ପରଜାଙ୍କଠାରୁ ବାରି ଯାବତ ବୃତ୍ତାନ୍ତ ।
ଭଣ୍ଡାର ମୁଣ୍ଡିଆ ତଳେ ବିଜେ ଧରକାନ୍ତ ॥

ବାରିଣ ସବୁ ଘଟଣା ହୋଇ ଗଲେ କାବା ।
ଲୋକଙ୍କୁ ବୁଝାଇଲେ ଏ ପ୍ରଭୁ ଲଡ଼ୁବାବା ॥

ପାତାଳ ଫୁଟନ୍ତା ବ୍ରହ୍ମ ଲିଙ୍ଗ ଛତ୍ରାକାର ।
ରହିଛି ଗୋଷ୍ପଦ ଚିହ୍ନ ବେନି ପାଟୁଶର ॥

ଠାକୁରଙ୍କ ଦେହେ ଅର୍ଦ୍ଧ ଚନ୍ଦ୍ର ବରବର ।
ଗ୍ରିପଟେ କରଇବା ଦେଉଳ ତିଆର ॥

କଲେ ମନ୍ଦିର ନିର୍ମାଣ ଡକାଇ ବିନ୍ଧାଣି ।
ଦକ୍ଷିଣେ ବେଢ଼ାକୁ ଲଗି ଦିବ୍ୟ ପୁଷ୍କରିଣୀ ॥

ଭୋଗ ରଗ ଯାନି ଯାତ୍ରା ଚଳିବା ନିମିତ୍ତ ।
ଖଞ୍ଜି ଦେଲେ ଜମି ବାରି ଗାଆଁ ଗଣ୍ଡା ବିତ ॥

ମହିମା ପ୍ରକାଶ ହେଲା ସ୍ୱଦେଶ ବିଦେଶ ।
ଦୂର ନିକଟରୁ ଯାତ୍ରୀ ହୋଇଲେ ପ୍ରବେଶ ॥

ଦରଶନେ ମନୋବାଞ୍ଛା କରନ୍ତେ ପୂରଣ ।
ଭକ୍ତେ ଦେଲେ ଧନ ରତ୍ନ ବସ୍ତ୍ର ଆଭରଣ ॥

ଏହି ମତେ ଆସ୍ତେ ଆସ୍ତେ ହୁଅନ୍ତେ ଉନ୍ନତି ।
ବେଳକୁ ବେଳ ବଳିଲା ସେବା, ପୂଜା ନୀତି ॥

× × × × ×

ମାଘ ପୌର୍ଣ୍ଣମାସୀ ଶୁକ୍ରବାର ଆଦ୍ୟ ଭୋଗ ।
ପାଞ୍ଚ ହଜାର ପନ୍ଦର ବର୍ଷ କଳି ଯୁଗ ॥

ଏ ଦିନ ବନ୍ଧି ଉତ୍ସବ ସର୍ବ ଜନ ପଦ ।
ଚଉର ଭାବେ ବସନ୍ତ ଋତୁ ଦିଏ ପଦ ॥

ବାବା କିଭ ବିଜେ ବଡ଼ ଦେଉଳକୁ ଲଗି ।
ମହା ମୋହନ ମନ୍ଦିର ଉତ୍ତର ଦିଗ୍‌ଭାଗୀ ॥

ନାହିଁ ନିରିଘାତ ଉଲ୍‌କାପାତ ବଜ୍ରଘାତ ।
ଯୋଡ଼ା ନୁହେଁ ଅକସ୍ମାତ ହେଲା ଭୂଗୂପାତ ॥

ଏଗାର ହାତ ଉଚ୍ଚରୁ ଖସିଲା ପଥର ।
ଶବଦେ ମନ୍ଦିର ବେଢ଼ା ହେଲା ଥର ଥର ॥
"କିଂଭୂତ ଏ କିମାକାର ?" ବୋଲି ସର୍ବେ ଦେଖି ।
କାହୁଁ ପାଷାଣ ଖସିଲା ଆଶ୍ଚର୍ଯ୍ୟେ ନିରେଖି ॥
ଯାହାହେଉ କାହାପରେ ମାଡ଼ି ନପଡ଼ିଲା ।
କିଛିତ ଆଘାତ ନାହିଁ କେମନ୍ତେ ଝଡ଼ିଲା ॥
ଭଙ୍ଗା ଖଣ୍ଡକୁ ଯୋଡ଼ିବା ପାଇଁ କଉଶଳ ।
କରି କେତେ ବିଜ୍ଞାଣିଏ ହୋଇଲେ ନିଷ୍ଫଳ ॥
ଅଦ୍ୟାପି ଦେବ ଭଣ୍ଡାରେ ରହିଛି ପାଷାଣ ।
ଖଣ୍ଡିଆ ପାଖରୁ ଦିଶେ ଅମୂଲ୍ୟ ରସାଣ ॥
ଦେଖିଲେ ଶାସ୍ତ୍ର ସହସ୍ରେ ବର୍ଷ ଦେବାଳୟ ।
ଭୋଗ କଲେ ଭୃଗୁପାତ ହୁଅଇ ନିଶ୍ଚୟ ॥
ବସିକଲେ ଅନୁମାନ ସୁପଣ୍ଡିତ ବର୍ଗେ ।
ସ୍ଥିରି ହଜାର ପନ୍ଦର ବର୍ଷ କଳି ଯୁଗେ ॥
ଇନ୍ଦ୍ରବାବାଙ୍କ ଦେଉଳ ହୋଇଛି ନିର୍ମିତ ।
ଏଥିରେ ମନେ ସନ୍ଦେହ ନହୁଏ ଜନିତ ॥
ସନ୍ଧାନ ଜାଣିବାପାଇଁ ଖୋଜିଲେ ମନ୍ଦିରେ ।
ଆଡ଼ ଉହାଡ଼ ଭିତର ସନ୍ଧିରେ କନ୍ଦିରେ ॥
କାହିଁ ଲେଖା ନପାଇଲେ କେତେ ବରଷରେ ।
କେମନ୍ତେ ପ୍ରସ୍ତୁତ ହେଲା କେଉଁ ନରେଶ୍ୱରେ ॥
ଭାରତରେ ତୀର୍ଥ ଭୂମି ଉତ୍କଳ ପ୍ରଦେଶ ।
ଏଥି ଉଦଭବି ପୁଣ୍ୟଜନମା ନରେଶ ॥
ରଖି ଯାଇଛନ୍ତି ଇହ ପରକାଳେ କଥା ।
ଦେଖି ସେ କୀର୍ତ୍ତି କିଏ ନ ନୁଆଁଇବ ମଥା ॥
ଶ୍ରୀ ଇନ୍ଦ୍ରକେଶ ଚରଣେ ସର୍ବଦା ବିଶ୍ୱାସ ।
ବାବାଙ୍କର ଉଚପରି ପାଇଲା ପ୍ରକାଶ ॥

## ମନ୍ଦିର ନିର୍ମାଣ

ରେବା ନଦୀ ତଟବର୍ତ୍ତୀ ପୂର୍ବେ ରିମା ରାଜ୍ୟ ।
ଜୟାଭନୁ ସିଂହ ନାମେ ତହିଁ ମହାରାଜ ॥
ବଘେଲ ପାଇଲା ଭରଦ୍ୱାଜ ସଗୋତ୍ରୀୟ ।
ପ୍ରବଳ ପ୍ରତାପ ବଂଶ ବିଶୁଦ୍ଧ କ୍ଷତ୍ରିୟ ॥
ଜ୍ୟେଷ୍ଠା ମଧ୍ୟମା କନିଷ୍ଠା ତିନିଗୋଟି ରାଣୀ ।
ତାହାଙ୍କର ଗର୍ଭୁଁ ଜାତ ସ୍ତ୍ରି ଜେନାମଣି ॥
ବଡ଼ ରାଣୀଙ୍କର ସୁତ ଯୁବରାଜ ହେଲେ ।
ନୃପମଣିଙ୍କି ଅନ୍ୟ ବେନି ରାଣୀ ପସ୍ୱରିଲେ ॥
ଆଉ ତିନି ପୁତ୍ରଙ୍କର ଭବିଷ୍ୟ ସଂସାର ।
କେମନ୍ତେ ଚଳିବ ସ୍ୱାମୀ କରିଛ ବିଚାର ॥
ଉତ୍ତରି ନୃପତି ଖଣ୍ଡା ଖୋରକ ପୋଷାକ ।
ଭୋଗ କରୁଥିବେ ରହି ସଦା ରାଜା ପାଖ ॥
ଶୁଣି ମୁଖ ଶୁଖାଇଣ ମଝିଆଣୀ ରାଣୀ ।
ହକାରି କୁମାର ସୂର୍ଯ୍ୟମଣି ଚନ୍ଦ୍ରମଣି ॥
ରାଜାଙ୍କର କହିବାର ଭାଷିଲେ ସମସ୍ତ ।
ଶୁଣି ବେନି ସୁନୁ ଦେଲେ ମାଥେ ବ୍ୟସ୍ତେ ହସ୍ତ ॥
ବୋଇଲେ କ୍ଷତ୍ରିୟ ପୁତ୍ର ହୋଇ ପରାଧୀନ ।
ରହିବା ଠାବରୁ ଭଲ ତେଜିବା ଜୀବନ ॥
ମାଏ କିପାଇଁ ରହିବୁ ଘରେ ହୋଇ ଭୁଲି ।
ଯାଉ ଅଛୁଁ ବେନିଭାଇ ଥରେ ଦେଶ ବୁଲି ॥
କଳା ଧଳା ଦୁଇଘୋଡ଼ା ଶାଳରୁ ସେ ବାଛି ।
ବସିଖଣ୍ଡା ଧରି ବାହାରିଲେ ଦେଶ କାଛି ॥
ପଞ୍ଚାଙ୍ଗୁଳ ମାପ ଦୁର୍ଗା-ପ୍ରତିମା କନକେ ।
ବିଦା ହେଲେ ପଦକର ପରି ଭରି ବେକେ ॥
ସେତେବେଳେ ଥିଲା ଏହା ନିବିଡ଼ ଜଙ୍ଗଲ ।
ବୁଲୁଥିଲେ ବାଘଭାଲୁ ମୃଗ ପଲ ପଲ ॥
ଦକ୍ଷିଣରେ ବାଣପୁର ପୂର୍ବେ ରଣପୁର ।
ଉତ୍ତରେ ବାଙ୍କୀ ପଶ୍ଚିମେ ବୌଦ ଘୁମୁସର ॥
ମଧ୍ୟେ ଦୀର୍ଘ ପ୍ରତି ଚତୁର୍ଦ୍ଦଶ କୋଶକାର ।
ନଥାଏ ଘୋର ଅରଣ୍ୟ ଯୋଗୁଁ ଅଧିକାର ॥

ପର୍ବତ କନ୍ଦରେ ଛୋଟ ଛୋଟ ପଲ୍ଲୀ ଗାଆଁ ।
ସ୍ୱାଧୀନ ଭାବରେ ଥାଏ ଖାଇ ବହି ନାଆଁ ॥

ତ୍ରିବୀଜାକ୍ଷର "ରଜବ" ଗଡ଼ ନାମେ ପଲ୍ଲୀ ।
ପହଞ୍ଚିଲେ ବେନି ଭ୍ରାତା ସଞ୍ଜେ ଆସି ବୁଲି ॥

ଦେଖିଲେ ଗାଁ ମୁଣ୍ଡେ ଜଗନ୍ନାଥ ମଣ୍ଡପର ।
ଛଣ ଘର ଖଣ୍ଡି ଉଚ୍ଚା ଉପର ଛପର ॥

ଅଧ ବଖରଏ ଝାଟି ବାଡ଼ ବୁଦା ଅଧା ।
ଅଳିଆ ମଇଳା ଘରେ ହୋଇଅଛି ଗଦା ॥

ସଫାକରି ମଣ୍ଡପକୁ ବସିଲେ ଆଣ୍ଠରେ ।
ଘୋଡ଼ା ଯୋଡ଼ାକୁ ବାନ୍ଧିଲେ ବାହାର ଖୁଣ୍ଟରେ ॥

ଖଣ୍ଡେ ଦୂରେ ଜଳପାଣି ଏକ ପୁଷ୍କରଣୀ ।
କାଖରେ କଳସି ଧରି ଆଣନ୍ତି ଘରଣୀ ॥

ଏପର ପୁରୁଷ ଦେଖି ନଥିଲେ ସେ କେବେ ।
ଭାବନ୍ତି ରାମ ଲକ୍ଷ୍ମଣ ଅବା ବେନି ଦେବେ ॥

କିବା ହରି ହର ଇନ୍ଦ୍ର ଉପଇନ୍ଦ୍ର ବେନି ।
ଏ ନରରୂପରେ ବିଜେ କଲେ ବା କିଘେନି ॥

ଉବୁଗ ଉବୁରି ହୋଇ ବହୁ ନର ନାରୀ ।
ସାହାସ ଧରିଣ ବେନି ଭାଇଙ୍କୁ ପଚାରି ॥

କାହୁଁ ଆସିଲ ? କେ ତୁମେ ? କାହିଁ ଯିବ କହ ।
ମୁଲ୍ଲିଛି ନପାରୁ ଦେଖି କି କି ନାମ ବହ ॥

କେବେହେଁ ସୁନ୍ଦରବର ଏଠାରେ ନରହ ।
ସଞ୍ଜ ବାଜିଲେ ହେଉଛି ବଡ଼ ବାଘ ଭୟ ॥

ତାଟି କବାଟ ପକାଇ ରହିବୁଁ ଏକ୍ଷଣି ।
ଯେ ଯାହାଘରେ ପାଇବା ପର୍ଯ୍ୟନ୍ତ ରଜଣୀ ॥

ଆସ ଆମଘରେ ତୁମ୍ଭେ ହୋଇବ ଅତିଥି ।
ପ୍ରାଣ ନପାଇବ କ୍ଷଣେ ରହିଥିଲେ ଏଥି ॥

ବଡ଼ଭାଇ କହି ରିମା ଗଚ୍ଛ୍ୟ ଆମ ଘର ।
ସୂର୍ଯ୍ୟମଣି ଚନ୍ଦ୍ରମଣି ବେନି ସହୋଦର ॥

ରଜାଙ୍କ ନନ୍ଦନ ବେନି ବୁଲି ଆସିଥିଲୁ ।
ଦୈବ ବଳେ ସଞ୍ଜବେଳେ ଏଥି ପହଞ୍ଚିଲୁ ॥

କ୍ଷତ୍ରି ପୁତ୍ର ହୋଇ ଛାର ବାଘଟାକୁ ଡରି ।
କାପୁରେ ଲୁଚି ରହିବୁ ପରଣେ ନମରି ॥

ଯାଅ ମାଆ ! ଭାଇ ! ଯା କରିବେ ଜଗନ୍ନାଥ ।
ସକାଳ ହେଲେ ସକଳେ ହୋଇବା ସାକ୍ଷାତ ॥

ଶୁଣିଏ ବାଣୀକି ବ୍ୟସ୍ତେ ସମସ୍ତେ ଚଳିଲେ ।
ମଣ୍ଡପରେ ରହି ବେନି ସୋଦର ଭଜିଲେ ॥

ସୂର୍ଯ୍ୟମଣି କହୁଛନ୍ତି ଚନ୍ଦ୍ରମଣି ଶୁଣ ।
ଅଧ ରାତି ଯାଏଁ ନିଦ୍ରାଯାଅ ତୁହି ପୁଣ ॥

ମୁହିଁ ଚାହିଁ ରହିଥିବି ହାତେ ଖଣ୍ଡାଧରି ।
ତାପରେ ବସିବୁ ତୁ ମୁଁ ଶୋଇବି ଶର୍ବରୀ ॥

ଶୋଇଲେ ସେ ଚନ୍ଦ୍ରମଣି ସିଉକାର କରି ।
ଜଗି ବସିଛନ୍ତି ସୂର୍ଯ୍ୟମଣି ଖଡ୍ଗ ଧରି ॥

ଗରଜନ୍ତି ପଶୁଜନ୍ତୁ ରାତ୍ରି ଅର୍ଦ୍ଧ ଭାଗ ।
ଏକାଳେ ଆସିଲ ମୁଣ୍ଡା ମହାବଳବାଘ ॥

ବୋଝ ପରି ମୁଣ୍ଡ ତାର ଢିଙ୍କି ପରି ଗୋଡ଼ ।
ବଡ଼ ବୋଡ଼ା ସାପ ପରି ହଲଏ ଲଙ୍ଗୁଳ ॥

ଘାଉଁ ଗରଜନେ ଘୋଡ଼ା ବେକଦେଲ ଚାପି ।
ହାଣିଲେ ଖଣ୍ଡାରେ ମୁଣ୍ଡ ସୂର୍ଯ୍ୟମଣି ଛାପି ॥

ଘୋର ରାବ ଦେଇ ମଲ ମୁଣ୍ଡା ମହାବଳ ।
ଘରେ ଭାବିଲେ ମାନବେ ମଲେ ବେନି ବାଳ ॥

ଏକାଳେ ଆସଇ ମହାକାଳୀ ମାଉସିଏ ।
କାଖେ ମୁଣ୍ଡରେ ମାଠିଆ ଗୋଟିଏ ଗୋଟିଏ ॥

ପୋଖରୀକି ପାଣି ଆଣି ସେହି ବାଟେ ଗଲ ।
ଲେଉଟାଣି ପିଲଟିଏ କରି ଆଗ ଚଲ ॥

ପାଶେ ପରବେଶେ ସୂର୍ଯ୍ୟମଣି ଭଣି ମାଆ ।
ପାଣିକି ଯାଇ ପାଇଲୁ ଛୁଆ କେଉଁ ଠାଆ ॥

ବାଘ ଭୟେ ପାରିଛନ୍ତି ସକଳେ କବାଟ ।
ଏଡ଼ା ହେଲ ଲେଉଟିଲୁ କେହ୍ନେ ଜଙ୍ଗଘାଟ ॥
କିଏ ସେ ତୁ କହ ବେଗି ନକରି ସଂଶୟ ।
ତୋତେ ଦେଖି ମନ ମୋର ହେଉଛି ଅଥୟ ॥
ଭରରି କାଳିକା ବାଳୀ "ଶୁଣ ଆରେ ବାବୁ ।
ତିନିବାର ସତ୍ୟକର ଜଣାଇବି ସବୁ" ॥
ଶୁଣି ସୂର୍ଯ୍ୟମଣି ତିନିଥର ସତ୍ୟ କଲେ ।
ତହୁଁ ଗୋସାମଣୀ ନିଜ କାହାଣୀ ଭଣିଲେ ॥
ବନେଶ୍ୱରୀ ବାଉରୀ ମୁଁ ଏଗ୍ରାମ ଦେବତୀ ।
ଚିହ୍ନଟ ଦେବାକୁ ଆସି ଅଛି ତୋର କତି ॥
ତୋର ସାହସ ଦେବତା ଭକତିକି ଦେଖି ।
ପ୍ରସନ୍ନ ହୋଇଲି ବତ୍ସ ! ସ୍ୱରୂପ ନିରେଖି ॥
ଭାଗ୍ୟବଳେ ଦିନେ ଏଥି ହେବୁ ନୃପବର ।
ମୋର ମୁଣ୍ଡ ହାଣି ତାକୁ ଇଷ୍ଟ ଦେବୀ କର ॥
ଗଣ୍ଡି ଝଣ୍ଟି ଦିଅ ସାନ ଭ୍ରାତାର ହାତରେ ।
ତୋର ସାହା ହୋଇ ରହିଥିବି ନିରନ୍ତରେ ॥
ସ୍ତିରୀ ହତ୍ୟା ପାତକକୁ ନ କରତୁ ଭୟ ।
ନୋହିଲେ ପ୍ରମାଦ ତୋତେ ପଡ଼ିବ ନିଶ୍ଚୟ ॥
ଶୁଣେ ସୂର୍ଯ୍ୟମଣି ଥକା ହୋଇ ରହିଛନ୍ତି ।
ହାଣ ହାଣ ବୋଲୁଛନ୍ତି ବଣର ଦେବତୀ ॥
ବାଧ୍ୟ ହୋଇ ଅସି ଧରି ଦେବୀ ଶିର ହାଣି ।
ଗଣ୍ଡି ଖଣ୍ଡି ମୁଣ୍ଡ ସ୍ୱଣ୍ଡେ ସାଇତିଲେ ଆଣି ॥
ଉଠାଇ ଚନ୍ଦ୍ରମଣିକି ଭଣିଲେ ଉଦନ୍ତ ।
ଶୁଣି ସାନଭାଇ ମନ ହେଲ ସ୍ତମ୍ଭୀଭୂତ ॥
ନିଦ୍ରାଗଲେ ବଡ଼ଭାଇ ଅନୁଜ ଜଗିଲ ।
ବାଘକୁ ଖୋଜି ବାଘୁଣୀ ସେ ସ୍ଥାନେ ଲଗିଲ ॥
ଆର ଘୋଡ଼ାଟାର ବେକ ଧରନ୍ତେ ସେ ଝପି ।
ହାଣିଲେ ଖଣ୍ଡାରେ ମୁଣ୍ଡ ଚନ୍ଦ୍ରମଣି ଛାପି ॥

ଘୋର ଗରଜନ କରି ବାଘୁଣିଟା ମଲ ।
ଘରେ ଲୋକେ ବୋଲୁଛନ୍ତି ମଲେ ଦୁଇଫିଲ ॥
ପାଇଲ ଗତି ଫିଟିଲ ସବୁଙ୍କର ଚାଟି ।
ବିସ୍ମିତ ହୋଇଲେ ସର୍ବେ ଦେଖି ଘଟଣାଟି ॥
ବୋଇଲେ ବାବୁ ମାଇଲ ଏହି ବାଘଯୋଡ଼ା ।
ଖଣ୍ଡିଆ ହୋଇଛି ବେକ ଖାଇଥିଲେ ଘୋଡ଼ା ॥
ମଣିଷ ନୁହତ ତୁମେ ସରଗର ଦେବ ।
ଏଡ଼େ ଅସାଧ୍ୟ ସାଧନ କା ହାତରେ ହେବ ॥
ମାଇପିଏ କହୁଛନ୍ତି ଦୁଇ ସ୍ୱକୁମାରେ ।
କେମନ୍ତେ ଛେଦିଲେ ବେନି ବାଘ ଖଣ୍ଡାଧାରେ ॥
ଶୁଣି ଦୁଇ ଭାଇ ସବୁ କହିଲେ ଘଟନା ।
ହରଷରେ କଲେ ସର୍ବେ ପ୍ରଶଂସା ରଚନା ॥
ରଜବ ଗଡ଼ରେ କଲେ ସୂର୍ଯ୍ୟମଣି ରଜା ।
ଟେକାଇଲେ ଛତି ଭ୍ରାସ ବଜାଇଲେ ବାଜା ॥
ନିକଟରେ ଗୁନା ମାଟି ସର୍ଦ୍ଦାର ଦୁଇଣୀ ।
ବିଭା କରାଇଲେ ସର୍ବ ଶୁଭେ ସୂର୍ଯ୍ୟମଣି ॥
କେତେଦିନେ ପ୍ରଜାଗଣେ ଧରି ଭାଇ ବେନି ।
ବୁଲି ଗଲେ କୁତାଟିଏ ସଙ୍ଗତରେ ଘେନି ॥
ପ୍ରବେଶିଲେ ରୁକ୍ଷୀ ବଜରମ ଗିରିତଳେ ।
ଠେକୁଆ ମାଡ଼ି ବସିଲ କୁକୁରକୁ ବଳେ ॥
ଦେଖି ଆଚମ୍ବିତ ହେଲେ ଦୁଇ ସହୋଦର ।
ବିଚାରିଲେ ଏହି ସ୍ଥାନ କି ବଳବରର ॥
ଠେକୁଆକୁ କୁକୁରଟା ଖାଇଥାନ୍ତା ସିନା ।
କୁକୁରକୁ ଠେକୁଆଟି ଖାଇ ଅଛି କିନା ॥
କରିବା ଗଡ଼ ଏ ବେନି ପର୍ବତ କନ୍ଦରେ ।
ଲୋକବାକ ଲଗାଇଲେ ମହା ଆନନ୍ଦରେ ॥
ହଟିଆରେ ଚାରିପାଖ ଜଙ୍ଗଲ ହଣାଇଁ ।
ଭଆସ ତୋଳାଇ ସେ ବିନ୍ଧାଣି ଅଣାଇ ॥

ଅଗ୍ନି ପୃଥ୍ୱୀ ପାଣୀ ମନ୍ତ୍ର ତ୍ରୟ ବୀଜାକ୍ଷରେ ।
ନାମ ଗ୍ରାମେ ଚତୁର୍ବିଧ ବୈଦିକ ପ୍ରବରେ ॥

ବାଘୁଆ ନୂଆଗଡ଼ ନାଁ ବାଘମାରି ଦେଲେ ।
ସୂର୍ଯ୍ୟମଣି ସିଂହ ରଣା ତହିଁ ରଜା ହେଲେ ॥

ମଧ୍ୟେ ନଅଗଡ଼ ଜିଣି ନୟାଗଡ଼ ନାମ ।
ଚଉଦ କୋଶ ପ୍ରମାଣ ବିସ୍ତାର ଆୟାମ ॥

ତା ଉତ୍ତର ପାର୍ଶ୍ୱରେ ଖଣ୍ଡେ ପଡ଼ା ଗ୍ରାମ ।
ଚନ୍ଦ୍ରମଣି ନୃପମଣି ହେଲେ ସେହି ଧାମ ॥

ଖଣ୍ଡପଡ଼ା ନାମଦେଇ ରାଜ୍ୟ ବିସ୍ତାରିଲେ ।
ବିନ୍ଧାଣି ହକାରି ରାଜପୁର ତିଆରିଲେ ॥

ଥିଲେ ରିମା ରାଜ୍ୟେ ସାନରାଣୀଙ୍କର ପୁଅ ।
'ବୃହତ୍‌ଭାନୁ' ଆଖିରୁ ବୁହାଇଣ ଲୁହ ॥

ପ୍ରବେଶିଲେ ଆସି ସୂର୍ଯ୍ୟମଣିଙ୍କ ଛାତିରେ ।
ଦେଖି ରଜା ବିଗ୍ଭରିଲେ ଆକୁଳ ମତିରେ ॥

ପଶ୍ଚିମ ପାର୍ଶ୍ୱେ ଦଶଗୋଟି ପଲ୍ଲୀ ଥିଲ ।
ସାନରଜା ହେଲେ ନାମ ଦେଇ ଦଶପଲ୍ଲା ॥

ଆଜକୁ ପ୍ରାୟ ସହସ୍ର ବରଷୁଁ ଅଧିକ ।
ହୋଇବା ସମ୍ଭବ ମିଳେ ଲେଖମୁଖୁଁ ଠିକ ॥

ପ୍ରାଚୀନ ପ୍ରବାଦ ଅଛି ଏମନ୍ତ ଘଟନା ।
ମାରିଲେଣି କେତେ ବୃନ୍ଦ କରିଏ ରଚନା ॥

ସପ୍ତବିଂଶତି ପୁରୁଷ ରଜା କୃଷ୍ଣଚନ୍ଦ୍ର ।
ଗ୍ରନ୍ଥାରମ୍ଭ ସମୟକୁ ନବଦୁର୍ଗ ଇନ୍ଦ୍ର ॥

ଆଦି ପୁରୁଷ ସେ ସ୍ୱପ୍ନାଦେଶ ସତ୍ୟମଣି ।
ବାଉରୀଙ୍କ ଗଣ୍ଡି ମୁଣ୍ଡ ରୂପଚରେ ଆଣି ॥

ସାଇତି ରଖିଲେ ରଜବରେ ଦଣ୍ଡପାଣି ।
ଦୁଇଟି ମନ୍ଦିର ନିର୍ମାଣିଲେ ନରମଣି ॥

ବଡ଼ ଦେଉଳଟସେ ରେଖ ମନ୍ଦିର ତା ନାମ ।
ତାପାଶେ ମୋହନ ଗୃହ ଅତି ଅନୁପମ ॥

ବିଂଶତି ପୁରୁଷ ରଜା ସେ ଗୋକୁଳାନନ୍ଦ ।
ସିଂହ ମାନଧାତା ନୟାଗଡ଼ ନରଇନ୍ଦ୍ର ॥

ଗୁଣବନ୍ତ ଜ୍ଞାନବନ୍ତ ବଳିଷ୍ଠ ପବିତ୍ର ।
ଓଡ଼ିଶାର ମହାରଜାଙ୍କର ପ୍ରିୟ ମିତ୍ର ॥

ପୁରୀ ଜଗନ୍ନାଥ ଦେବଙ୍କର ପରୀକ୍ଷକ ।
ଛଡ଼ି ବାଡ଼ି ଧର ରଜ ମହଲ ରକ୍ଷକ ॥

ଉତ୍କଳ ନୃପତିଠାରୁ ମାନଧାତା ପଦ ।
ପରମ୍ପର ପ୍ରାପ୍ତହେଲେ ସମ୍ପାଦି ସମ୍ପଦ ॥

ଇଷ୍ଟଦେବ ବାବାଙ୍କର କଲେ ପୁରନ୍ଦୟ ।
ଘଣ୍ଟାନାଦ ମୁଖଶାଳା ନୃତ୍ୟରଙ୍ଗାଳୟ ॥

ପଞ୍ଚ ଦେବ ସ୍ଥାପି ଖୋଳାଇଲେ ପୁଷ୍କରିଣୀ ।
ଚଳାଇଲେ ଯାତ୍ରା ପୁଣ୍ୟ ପରବାଣି ॥

ବସାଇ ପଣ୍ଡିତ ପ୍ରସାରିଲେ ନୀତି କାର୍ଯ୍ୟ ।
ନିଗମ ତନ୍ତ୍ର ନିୟମେ ଯହିଁକି ଯେ ଧାର୍ଯ୍ୟ ॥

ପିଣ୍ଡିକାରେ ଶାଳଗ୍ରାମ ବିଜୟ ପ୍ରତିମା ।
ମନ୍ଦିରେ ଚିତ୍ର ମୂରତି ରଚିଲେ ସୁଷମା ॥

ଠାକୁରଙ୍କ ଭୋଗ ରାଗ ଚଳିବା ନିମନ୍ତେ ।
ଖଞ୍ଜିଦେଲେ ଜମି ବାଡ଼ି ଶକ୍ତି ଅନୁଗତେ ॥

ସେବାୟୀମାନଙ୍କ ପାଇଁ ଖଞ୍ଜି ଦେଲେ ଜମିବାରି ।
ପୁରୁଷାନୁକ୍ରମେ ଭୋଗିବାକୁ ଦଣ୍ଡଧାରୀ ॥

ତାପର ପୁରୁଷ ରଜା କେତେକ ଖଞ୍ଜିଲେ ।
ପରମ୍ପର ବୃଦ୍ଧି କରି ଭକ୍ତିରେ ମଜ୍ଜିଲେ ॥

ତହୁଁ ଛ ପୁରୁଷେ ଲଡ଼ୁକେଶ ମାନଧାତା ।
ଶ୍ରୀଜଗନ୍ନାଥ–ନିକୁଞ୍ଜ ମନ୍ଦିର ନିର୍ମାତା ॥

ଏଥି ମଧ୍ୟ ପୁରୁଷରେ ଲଡ଼ୁବାବାଙ୍କର ।
କରିଛନ୍ତି କେତେ କାର୍ଯ୍ୟ ମହୋନ୍ନତିକର ॥

ତହୁଁ ଛ ପୁରୁଷେ ନାରାୟଣ ମାନଧାତା ।
ନାରାୟଣୀ ଠାକୁରାଣୀ ମନ୍ଦିର ନିର୍ମାତା ॥

ବେଢ଼ା ମଧ୍ୟରେ ହୋଇଲା ପଥର ଚଟାଣ ।
ଶଂଖ ମର୍ମର ପ୍ରସ୍ତର ମନ୍ଦିରେକି ଟାଣ ॥

ଏହି ରୂପେ ସର୍ବାଙ୍ଗୀନ ହେଲା ସମୁନ୍ନତ ।
ମନ୍ଦିର ନିର୍ମାଣ ବାବାଙ୍କର ସମାପତ ॥

## ମନ୍ଦିର ବର୍ଣ୍ଣନା

ଜୟ ହେ ମହିମାମୟ ଦେବ ଲଡ଼୍‌କେଶ ।
କେ ବର୍ଣ୍ଣି ପାରିବ ତବ ମହିମା ବିଶେଷ ॥

ଭାରତ ମାତାର ଏକମାତ୍ର ପ୍ରିୟ ପାତ୍ରୀ ।
ତୀର୍ଥ ମାଳିନୀ ଉତ୍କଳ ପୁଣ୍ୟମୟ ଗାତ୍ରୀ ॥

ତଥି ନବ ଦୁର୍ଗ ରାଜ୍ୟ ଶରଣକୂଳରେ ।
ଚିତ୍ରୋତ୍ପଳା ଉପନଦୀ କୁସୁମୀ କୂଳରେ ॥

ମୁଷ୍ଟେ ଭଣ୍ଡାର ଶାଇଳ କିବା କଇଳାସ ।
ସପରିବାରେ ବିଜୟ କାଳିକା ବିଳାସ ॥

ଚାରିପାଖେ ଘେରି ଅଛି ଧବଳ ପ୍ରାଚୀର ।
ଦକ୍ଷିଣେ ବିଶାଳ ନୀଳ କାସାର ରୁଚିର ॥

ବେଢ଼ାମଧ୍ୟେ ଅର୍ଦ୍ଧଶତ ହସ୍ତ ପରିମିତ ।
ଗୁମୁଟ ଗମ୍ଭୀରେ ଶକ୍ତି ସହ ବିରାଜିତ ॥

ଛତ୍ରାକାର ବ୍ରହ୍ମଲିଙ୍ଗ ହରି ହର ମୂର୍ତ୍ତି ।
ଅଷ୍ଟଭୂଜା ନାଗେ ଅଷ୍ଟଦିଗେ ବେଢ଼ି ଛନ୍ତି ॥

ମଣ୍ଡିତ ଗନ୍ଧ ତୁଳସୀ ବେଲ ପତ୍ରୀ ଫୁଲେ ।
ମଉଳିରେ ଗଙ୍ଗାଧାର ଶୋଭେ ଚନ୍ଦ୍ରଚୂଳେ ॥

ପଶ୍ଚିମେ ପିଣ୍ଡିକାପରେ ବିଜୟ ପ୍ରତିମା ।
ଲକ୍ଷ୍ମୀନାରାୟଣ ରାଧାକୃଷ୍ଣ ଶିବ ଉମା ॥

ବାଳ ଗୋପାଳ ପ୍ରତିମା ଗୁରୁଣ୍ଡି ଗୋପାଳ ।
ଚନ୍ଦ୍ରଶେଖର ପ୍ରତିମା ନାହିଁ ପଟାନ୍ତର ॥

ଶୁଦ୍ଧ ସୁବର୍ଣ୍ଣ ଝଳିରୁ ବଳି ତେଜୀୟାନ ।
ନଖ-ମୁଖ-ନାସା ଚକ୍ଷୁ-ହସ୍ତ ପାଦ ମାନ ॥

ଏଥି ଯେ ଦକ୍ଷିଣାବର୍ତ୍ତ ଶିଳା ଶାଳଗ୍ରାମ ।
ନଥିବ ଖୋଜିଲେ କ୍ଷିତି ମଧ୍ୟେ କେଉଁ ଗ୍ରାମ ॥

ପଶ୍ଚିମ କାନ୍ଥେ ସୁନ୍ଦର ତାଣ୍ଡବ ମୂରତି ।
ଦେଖିଲେ ନୟନେ ହୃଦଭକତି ଭରତି ॥

ବୃକ୍ଷ ଲତା ପୁଷ୍ପ ଫଳେ ବିଚିତ୍ର ରୂପରେ ।
ମନ୍ଦିର ମଧ୍ୟେ ଆବୃତ ଚାନ୍ଦୁଆ ଉପରେ ॥

ଶୁଦ୍ଧ-ଶଉଚ ସୁବାସ କେପାରିବ କଳି ।
ଅବିରତେ ଗୃହେ ଜଳୁଥାଇ ଦୀପାବଳୀ ॥

ରେଖ ମନ୍ଦିର ପାଖରେ ମୋହନ ଦେଉଳ ।
ଶୁଚି କମ କାମ ଆହା କେମନ୍ତ ଡଉଳ ॥

ମଧ୍ୟେ ଉର୍ଦ୍ଧ୍ୱଦିଶେ ମଞ୍ଚା ଭିତର ଭଣ୍ଡାର ।
ପୂରିତ ଧନ କନକ ରତନ ଅପାର ॥

କହନ୍ତି ଭିତରେ ଖଣ୍ଡି ନାଗେ ଥାନ୍ତି ଜାଗି ।
କେବେ ଦେଖିନି ବାହାରେତ ତାଲଥାଏ ଲାଗି ॥

ନିତ୍ୟ ବ୍ୟବହାର ଦ୍ରବ୍ୟ ସେଘରେ ସିନ୍ଦୁକ ।
ଗରିଆ ଗଡ଼ୁ କଟାଉ ପହୁଡ଼ ପଲ୍ୟଙ୍କ ॥
ମୋହନକୁ ଲାଗି ଘଣ୍ଟ ବାଦନ ପ୍ରାସାଦ ।
ବେଳେ ବେଳେ ଶୁଭେ ଘଣ୍ଟା କାହାଳି ନିନାଦ ॥

ତାପାଶକୁ ଅପୂରବ ଗୃହ ମୁଖଶାଳା ।
ଅଛନ୍ତି ସାବିତ୍ରୀ ଦେବୀ ପଞ୍ଚମୁଖୀ ବାଳା ॥

ବୃଷ ସିଂହ ଟୈକୀ ପ୍ରଭା ସୁଖାସନ ଆଦି ।
ରହିଥାଏ ସେହି ଗୃହେ ଠାକୁରଙ୍କ ଗାଦି ॥

ମୁଖଶାଳା ପାଖେ ନାଟ ମଣ୍ଡପ ବିରଟ ।
କେତେ ଚିତ୍ର ବିଚିତ୍ର ସେ ହୋଇଛି ନିରଟ ॥

ଏ ସାଞ୍ଚ ପାଞ୍ଚ ବଖର ସରି କାହିଁ ନାହିଁ ।
ନିତ୍ୟ ଦେଖୁଥିଲେ ନୂତନତା ଦିଶୁଥାଇ ॥

ସ୍ୱୟଂ ବିଶ୍ୱକର୍ମା କିବା କରିଛି ଗଠନ ।
ମାନବ ମାତ୍ରକ କାହିଁ କରିବ ଘଟନ ॥

ବାସୁଦେବ ଗଣପତି କାର୍ତ୍ତିକ ଜାହ୍ନବୀ ।
ବଡ଼ ଦେଉଳେ ବାବାଙ୍କ ପାର୍ଶ୍ୱ ଦେବ ଦେବୀ ॥

ଅଗ୍ନି ଦକ୍ଷିଣ ପଶ୍ଚିମ ଉତ୍ତର ଦିଗରେ ।
ରହିଛନ୍ତି ପରିବାର ବାହନ ସଙ୍ଗରେ ॥

ତିନି ଦିଗ ଊର୍ଦ୍ଧ୍ୱେ ବ୍ରହ୍ମା ବିଷ୍ଣୁ ମହେଶ୍ୱର ।
ବାର ବିଜାତୀୟା ଛବି ଯେତେକ ବିଶ୍ୱର ॥

ଭକ୍ତଙ୍କର ଆତ୍ମା ପରିଚୟ ଦେବାପାଇଁ ।
ଜୁଳନ୍ତ ଜୀବନ୍ତ ଚୂର୍ଣ୍ଣ୍ୟ ଦିଅନ୍ତି ଚିହ୍ନାଇ ॥

ମନ୍ଦିର ଅଳାଣ୍ଡ ପରେ ଶୋଭିତ ତ୍ରିଶୂଳ ।
ଚଳେ ଧବଳ ପତାକା ଚଞ୍ଚଳ ମଣ୍ଡୁଳ ॥

ପଦ୍ମ ପାରିଜାତ ଆଦି ଛବି ପୁଷ୍ପଇତା ।
ଦେଉଳ ବାଡ଼ ବାହାର ଭିତରେ ଶୋଭିତା ॥

କାହିଁ ରାମ ଅଭିଷେକ କାହିଁ କୃଷ୍ଣ କାଳୀ ।
କାହିଁ କାଳୀୟ ଦଳନ ମୂର୍ତ୍ତି ବନମାଳୀ ॥

କାହିଁ ନାଗର ନାଗରୀ ଶୀତଳା ବଗଳା ।
କାହିଁ ଶିବ ଦେହେ ଉଗ୍ର କାଳିକା ଛଗଳା ॥

କାହିଁ ଉଗ୍ରତାରା ଦେବୀ ଶବ ଶିବ ଦେହେ ।
କାତି ଖଡ୍ଗ ଖପର ନୀଳ ପଦ୍ମ ବହେ ॥

କାହିଁ ମତ୍ସ୍ୟ–କଚ୍ଛ–କୋଳ–ନୃସିଂହ–ବାମନ ।
ତିନି ରାମ–ବୌଦ୍ଧ–କଳକୀ ରୂପ ଶୋଭବନ ॥

ଦଶ ଅବତାର କାହିଁ ଦଶ ମହାବିଦ୍ୟା ।
ଷୋଡ଼ଶୀ ଭୁବନେଶ୍ୱରୀ ଶାରଦା ପ୍ରସିଦ୍ଧା ॥

ଭୈରବୀ ଛିନ୍ନମସ୍ତକା ରମା ଧୂମାବତୀ ।
ମାତଙ୍ଗୀ ସଙ୍ଗେ ସପତ ମାତୃକା ବସତି ॥

ବ୍ରହ୍ମୀ ମାହେଶ୍ୱରୀ ମାତା କୁମାରୀ ବୈଷ୍ଣବୀ ।
ବାରାହୀ ଶଚି ଚାମୁଣ୍ଡା ମୁଣ୍ଡମାଳା ଛବି ॥

କାହିଁ ପନିକିରେ ମାଆ କାଟନ୍ତି ପୁଅକୁ ।
କାହିଁ ପିଲଖାଇ ଆଖି ବୁହାନ୍ତି ଲୁହକୁ ॥

କାହିଁ ବସିଛି ମାରୁତି ଲଙ୍ଗୁଡ଼ ଗୁଡ଼ାଇ ।
ରାବଣ ଦୈତ୍ୟ ରହିଛି ତାକୁ ରାରଡ଼ାଇ ॥

କାହିଁ ସେ କାଞ୍ଚୀ କାବେରୀ ମାଣିକା ଗୁଆଳୀ ।
କ୍ଷୀର ଦହି ବଡ଼ା ମୁଣ୍ଡେ ଧରିଅଛି ବାଳୀ ॥

ଆଗେ ରାମ କୃଷ୍ଣ ଚଢ଼ିଛନ୍ତି ବେନି ଘୋଡ଼ା ।
ହାତ ପତାଇ ମାଗନ୍ତି ଦୁଧ ଦହି ଯୋଡ଼ା ॥

କାହିଁ ଯୁଧିଷ୍ଠିର ଭୀମ ଅର୍ଜ୍ଜୁନ ନକୁଳ ।
ସହଦେବ ସହ ଦ୍ରୁଉପଦୀ ହୋଇ ଠୁଳ ॥

ପାଣ୍ଡବ ପାଞ୍ଚ ସୋଦର ଅଭିଷେକେ ସ୍ଥିତ ।
କାହିଁ ଧନୁଶର ପାଣି ଠାଣି ଇନ୍ଦ୍ରଜିତ ॥

କାହିଁ ଯାମଳା ଅର୍ଜ୍ଜୁନେ ବନ୍ଧା ବେଣୁ ପାଣି ।
ଦଉଡ଼ିରେ ବାନ୍ଧି ଅଛି କ୍ରୋଧେ ନନ୍ଦରାଣୀ ॥

କାହିଁ ଶ୍ରୀରାମ ଲକ୍ଷ୍ମଣ କରେ ଧନୁଶର ।
କାହିଁ ଅନନ୍ତ ଶୟନ ପ୍ରଭୁ ଚକ୍ରଧର ॥

କାହିଁ ପୂତନା ରାକ୍ଷସୀ କୃଷ୍ଣ ସ୍ତନ୍ୟ ପାନେ ।
ଇତସ୍ତତଃ ହୋଇ ମୃତେ ପଡ଼ିଛି ଉତ୍ତାନେ ॥

କାହିଁ ଅଘ ଅଜଗର କେଶୀ ଦୈତ୍ୟ ଘୋଡ଼ା ।
କେଶ କରେ ଧେନୁକ ବକ ବେକ ମୋଡ଼ା ॥

କାହିଁ ବୁଢ଼ା ରେଗୀ ହାତ ବଇଦ ଦେଖାଇ ।
ପିଲ୍ଲ ପୁଅ ହାତ ଧରି ମାଇପ ସକାଇ ॥

କାହିଁ ବସନ ହରଣ ଗୋପୀ ରାସ କ୍ରୀଡ଼ା ।
କାହିଁ ଶ୍ରୀପରଶୁରାମ ହୋଇଛନ୍ତି ଛିଡ଼ା ॥

ବକ ମୟୂର ସାରିକା ଶୁକ ପିକ ପକ୍ଷୀ ।
ମୃଗ ଶାର୍ଦ୍ଦୂଳ ମର୍କଟ କେପାରିବ ଲକ୍ଷି ॥

କାହିଁ ଶୁକଦେବ ଭାଗବତ ପରୀକ୍ଷିତେ ।
ବାଲ୍ମିକ ବୋଲୁଛନ୍ତି ରାମାୟଣ ଗୀତେ ॥

କାହିଁ ବନଦୁର୍ଗା ପାର୍ଶ୍ୱେ ମାଧବ ଠାକୁର ।
କଣ୍ଡା କାଢ଼ନ୍ତେ ଦେଖନ୍ତି ଶଙ୍କର କୁକୁର ॥

ନୀଳ ସରସ୍ୱତୀ ରୂପେ ଗଦଗଦ ବାଗ୍‌ଦେବୀ ।
ଚୌଷଠୀ ଯୋଗିନୀ ଗଣେ ଛନ୍ତି ସଦା ସେବି ॥

ନନ୍ଦନ ବନେ ନାରଦ ବାଉଛନ୍ତି ବୀଣା ।
କାହିଁ ବିଶ୍ୱାମିତ୍ର ଜନକାଦି ରୁଷି ଟିଣା ॥

ଷଡ଼ ହାତ ମନୋରମ ମୂରତି ଚୈତନ୍ୟ ।
ଜଗାଇ ମାଧାଇ ଦୁଷ୍ଟେ ଦେଉଛନ୍ତି ଜ୍ଞାନ ॥

କାହିଁ ବାସୁଦେବ ନବ ଗୁଣ୍ଡର ମୂରତି ।
ଆଗେ ପାର୍ଥ କର ଯୋଡ଼ି ଭକତି କରନ୍ତି ॥

ଏମନ୍ତେ ମନ୍ଦିର କାନ୍ଥେ ଛନ୍ତି ଯେତେ ଛବି ।
କେ କହି ପାରିବ କବିବ୍ରହ୍ମ ଯିବେ ଦବି ॥

ବଉଳମାଳା ପଥର ଶଂଖ ମଲ ମଲ ।
ଦେଉଳ ଚଟାଣ ଦିଶେ କେଡ଼େ ଝଲ ମଲ ॥

କଟା ପଥର ବସିଛି ବିସ୍ତୃତ ବେଢ଼ାରେ ।
ନଲଗେ ବାଲି କାଦୁଅ ଚାଲନ୍ତେ କଡ଼ାରେ ॥

ମନ୍ଦିରେ ଅନେକ ଭଳି ଯାଉଁଳି କବାଟ ।
ଝିଲିରେ ମାଛି ଗଳିବାପାଇଁ ନାହିଁ ବାଟ ॥

ଏରୁଣ୍ଡିରେ କାଳଗର୍ତ୍ତି ଦ୍ୱାରେ ଦ୍ୱାରପାଳ ।
ଧରିଛନ୍ତି ବେତ ହାତେ ଭୃଙ୍ଗୀ ନନ୍ଦୀକାଳ ॥

ନାଗ ବନ୍ଧେ ମହାଲକ୍ଷ୍ମୀ ଦେବୀ ସରସ୍ୱତୀ ।
ଦୁଆର ଶାଖାନ୍ତେ ଗଙ୍ଗା ଯମୁନା ବସନ୍ତି ॥

ବାହାର ଦୁଆରେ ପୂର୍ବ ଦିଗେ ଯୋଡ଼ାହାତୀ ।
ବେଇଟି ଉପରେ ବେନି ମାହୁନ୍ତ ଅଛନ୍ତି ॥

ବଳିଷ୍ଠ ଯୁଗଳ ସିଂହ ବିସ୍ତାରିଣ ତୁଣ୍ଡ ।
କ୍ରୋଧରେ ବେନି ନଖରେ ବିଦାରନ୍ତି ମୁଣ୍ଡ ॥

ଏଡ଼େ ଭୟଙ୍କର ମୂର୍ତ୍ତି କାହିଁ ଦେଖା ନାହିଁ ।
ଥରେ ଦେଖିଲେ ପଲକେ ସଦା ନାଚୁଥାଇ ॥

ସିରିପାଖେ ଦିଆଯାଉଅଛି ଲୁହା ବାଡ଼ ।
ଟାହିଆ ଦ୍ୱାରେ ପିତଳ କବାଟ ନିବାଡ଼ ॥

ଉତ୍ତର ପାର୍ଶ୍ୱ କୋଠା ବାହାର ଭଣ୍ଡାରେ ।
ପ୍ରନ୍ଥିତ ଛବି ତରଯ ଭ୍ରମର ଗଣ୍ଡାରେ ॥

ପାଟ ଛିଟ ଅଳଙ୍କାର ଆଉଟ ଚିରଳ ।
ଘଣ୍ଟ ଘଣ୍ଟି ଖୁରୀତାଳ ମାଦଳ କାହାଳ ॥

ବାହାର ପୁରୁବ କାନ୍ଥେ ଦଶ ଅବତାର ।
ଉପରେ ରାମାଭିଷେକ ସୀତା ଲଙ୍କେଶ୍ୱର ॥

ବଶିଷ୍ଠ ସୁମନ୍ତ ଦଶରଥ ମହାରାଜେ ।
ବତ୍ସାବୃନ୍ଦେ ସଖାମଧ୍ୟେ ବଂଶୀଧାରୀ ସାଜେ ॥

ଟାହିଆ ଦ୍ୱାର ଦକ୍ଷିଣ ପଟର କୋଠାରେ ।
ଠାକୁର ପ୍ରସାଦ ବିକା ହୁଅନ୍ତ ସେଠାରେ ॥

ଟାହିଆ ଦୁଆର ଡେଇଁ ପଶିବ ବେଢ଼ାକୁ ।
ସିମେଟ ପାହାଚେ ପାଦ ପକାଇ ଉଡ଼ାକୁ ॥

ବେଢ଼ା ଭିତର ଦୁଆଁରେଛନ୍ତି ବେନି ହରି ।
ଆଖି ତରଟି ଝରନ୍ତୁ ଛଳ ଛଳ କରି ॥

ବେଢ଼ା ଅଗ୍ନି କୋଣେ ଅଛି ତୁଳସୀ ଚଉଁର ।
କାହାକୁ ନଲଗି ଏକା ରହିଛି ବେଉର ॥

ବେଢ଼ା ଦକ୍ଷିଣ ପାଖରେ ପୋଖରୀର କୂଳ ।
ଦୂର ପଟେ ସୂର୍ଯ୍ୟ–ବୈଦ୍ୟନାଥଙ୍କ ଦେଉଳ ॥

ତା ପାଖେ ଭୋଗମଣ୍ଡାଇ ଗୃହେ ଅନ୍ନପୂର୍ଣ୍ଣା ।
ନୃତ୍ୟ ରଙ୍ଗେ ରହିଛନ୍ତି ଦୀନ ଦୁଃଖଚୂର୍ଣ୍ଣା ॥

ଦକ୍ଷିଣ ପ୍ରାଚୀରେ ଆଦିତ୍ୟାଦି ନବ ଗ୍ରହେ ।
ସାୟୁଧ ବାହାନେଛନ୍ତି ବିଚିତ୍ର ବିଗ୍ରହେ ॥

ପଶ୍ଚିମ ପାଖେ ସଖୁଡ଼ି ନିଃସଖୁଡ଼ି ଶେଷ ।
ବେନି ପାଶେ ପଣ୍ଡା ମାଳି ପୁଡ଼ା ରନ୍ଧାବାସ ॥

ବାୟୁ କୋଣେ ଦେବସ୍ନାନ ମଣ୍ଡପ ସୁନ୍ଦର ।
ତାପାଖ ପୂରବେ ଜଗନ୍ନାଥ ଶ୍ରୀମନ୍ଦିର ॥

ଜଗନ୍ନାଥ ବଳଭଦ୍ର ଭଦ୍ରା ସୁଦର୍ଶନ ।
ଚତୁର୍ଦ୍ଧା ମୂର୍ତ୍ତି ଗରୁଡ଼ ଅଛି ସନ୍ନିଧାନ ॥

ସେ ମନ୍ଦିର ଦ୍ୱାରେ ଦକ୍ଷିଣକୁ ମୁଖକରି ।
ବିକଟାଳ ରୂପେଛନ୍ତି ଯୁଗଳ କେଶରୀ ॥

ଉତ୍ତର ପାଚେରୀ ଦ୍ୱାର ପଶ୍ଚିମେ ଶ୍ରୀରାମ ।
ଲକ୍ଷ୍ମଣ ସୀତା ସହିତ ମୂର୍ତ୍ତି ଅନୁପମ ॥

ପର୍ବେ ଅକ୍ଷୟ ଦଇତ୍ୟ ପାଦେ ମରଦନ ।
କରୁଛନ୍ତି ପଞ୍ଚମୁଖ ପବନ ନନ୍ଦନ ॥

ବରାହ ଶାର୍ଦ୍ଦୂଳ କପି ଗରୁଡ଼ ତୁରଙ୍ଗ ।
ଦଶହସ୍ତେ ନାନା ଶସ୍ତ୍ର ବପୁ ଦିଶେ ରଙ୍ଗ ॥

ଉତ୍ତର ଟାହିଆ ଦ୍ୱାର ତାପାଶେ ବିରଜେ ।
ଈଶାନେ ଶ୍ରୀନାରାୟଣୀ ପ୍ରାସାଦକି ସଜେ ॥

ସିଂହାସନେ ବିଜେ ଦୁର୍ଗା ମହିଷ ମର୍ଦ୍ଦିନୀ ।
ବିଜୟ ପ୍ରତିମା ସଙ୍ଗ ମଙ୍ଗଳ ବର୍ଦ୍ଧିନୀ ॥

ବସିଛନ୍ତି ବେନି ବାଘେ ଦେବୀ ଦ୍ୱାର ଆଗେ ।
ଆକ୍ଷି ତରଟି ଘୁରାଁନ୍ତି ପାଟି ମେଲି ରାଗେ ॥

ଦକ୍ଷିଣ ମୁଖେ ଦେବୀଙ୍କ ଦକ୍ଷିଣ ସୀମାରେ ।
ବିମଳାଦି ନବଶକ୍ତି ଶିଳା ପ୍ରତିମାରେ ॥

ନାଟମଣ୍ଡପର ଚାରି ଦିଗେ ଚାରିଦ୍ୱାର ।
ପୂରବ କବାଟ ଛବି ଦଶ ଅବତାର ॥

ମୃତ୍ୟୁଞ୍ଜୟ ତ୍ରିଅମ୍ବକ ତାଣ୍ଡବ ମୂରତି ।
ଇନ୍ଦ୍ର ଆଦି ଦଶ ଦିଗପାଳ ବିରାଜନ୍ତି ॥

ଊର୍ଦ୍ଧ୍ୱେ ଦଧି ମନ୍ଥ ପୂର୍ଣ୍ଣକୁମ୍ଭ ଯାଏ ଦେଖା ।
ଦୁଇପାଖେ କେଡ଼େ କମନୀୟ ଗନ୍ଧ ରେଖା ॥

ନାଟ୍ୟଶାଳା ମୁଖଶାଳା ପଶ୍ଚିମର ପଟ ।
ଅମୁଦା ଦୁଆର ଦୁଇ ଅଇଁଗା କବାଟ ॥

ବାକି ତିନି ଦିଗେ ଲଗା ହୋଇଛି କବାଟ ।
ଘଣ୍ଟ ବଜା ଘରେ ଅଛି ଏହିପରି ବାଟ ॥

ମୋହନ ବେନି ଦୁଆର ଦକ୍ଷିଣ ପୂରବ ।
ଆଣେ ଅରଗଳି ଦେଲେ ତାଉପଦେ ଧ୍ରୁବ ॥

ମୋହନ ମନ୍ଦିରେ ପାଟ ବୃଷଭ ସ୍ତମ୍ଭରେ ।
ଚିକ୍କଣ ପାଷାଣ ମୂର୍ତ୍ତି ଶୋଭଇଛି ଦମ୍ଭରେ ॥

ତାଉପରକୁ ଶିକୁଳୀ ବନ୍ଧା ବଡ଼ ଘଣ୍ଟି ।
ଲେକମୁଖ ବାଦ୍ୟ ନାଦ ସଙ୍ଗେ ମିଶେ ରଟି ॥

ମୋହନୁଁ ବଡ଼ ଦେଉଳେ ପଶନ୍ତେ ଅନ୍ଧାର ।
ବୋଲନ୍ତି ତାକୁ ଅମୁଦା କଳା ହାଟ ଦ୍ୱାର ॥

ଅବିରତେ ଗମ୍ଭୀରରେ ଜଳେ ଦୀପମାଳା ।
ତା ସଙ୍ଗେ ବିଜୁଳୀ ବତୀ ଦିଶେ ଧଳାନୀଳା ॥

ଧୀରେ ଯାତ୍ରୀଙ୍କି ସେବକେ ନିଅନ୍ତେ କଢ଼ାଇ ।
ଦେବ ଦରଶନ ଆଶେ ପାଦକୁ ବଢ଼ାଇ ॥

ବେଢ଼ାର ବାୟବ୍ୟ କୋଣେ ଶୁଦ୍ଧ ବାର୍ଣ୍ଣିଜଳ ।
ଠାକୁରଙ୍କ ବ୍ୟବହାର ଯୋଗ୍ୟ ସୁଶୀତଳ ॥

ବେଢ଼ାର ଈଶାନ ନଇରତ କୋଣ ଜେନି ।
ବକୁଳ ବୃକ୍ଷମୂଳରେ ସୁନ୍ଦର ଗୁନ୍ଦନୀ ॥

ବାହାରେ ଦକ୍ଷିଣେ ନୀଳ ପୁଷ୍କରଣୀ ପାଣି ।
ମଧ୍ୟେ ଚନ୍ଦନ ମଣ୍ଡପ ଦୀପ ଦଣ୍ଡୀ ପୁଣି ॥

ହୁଡ଼ା ଉପରୁ ତଳକୁ ପଡ଼ିଛି ପାହାଚ ।
ଚଉଦିଗେ ହୁଡ଼ାପରେ ସିମେଟର ବେଞ୍ଚ ॥

ଦକ୍ଷିଣ ହୁଡ଼ା ତଳକୁ ସେ ଗ୍ୱଳି ମଣ୍ଡପ ।
ଠାକୁରଙ୍କ ଯାତ୍ରା ମାତ୍ରେ ସେଥି ହୁଏ ଧୂପ ॥

ବେଢ଼ା ବାହାର ଉତ୍ତରେ କୁସୁମ ଉଦ୍ୟାନ ।
ନାନା ଫଳ ପୁଷ୍ପ ବୃକ୍ଷ ଲତା ଶୋଭମାନ ॥

ଈଶାନ ଦେଶରେ ଦୋଳ ମଣ୍ଡପ ସୁନ୍ଦର ।
ପୂର୍ବେ ମନ୍ଦିର କାର୍ଯ୍ୟାଳୟ ଦିବ୍ୟ କୋଠାଘର ॥

ଠାକୁରଙ୍କ ଭୋଗ ରାଗ ଯାନି ଯାତ୍ରା ନୀତି ।
ସେବକଙ୍କର ନିଯୋଗ ବୁଝାଯାଏ ନିତି ॥

ତା ପାଶରେ ଦକ୍ଷିଣକୁ ଲଗି ଧର୍ମଶାଳା ।
ସବୁବେଳେ ବିଦେଶୀୟ ଯାତ୍ରୀ ଯହିଁ ମେଳା ॥

ଏ ଯେବେ କ୍ଷେତ୍ର ବର୍ଣ୍ଣନା କେ କହି ପାରିବ ।
ମାନବ ମାତ୍ରେ ଜୀବନେ କାହିଁ ତା ପାରିବ ॥

ପୂର୍ବାଚାର୍ଯ୍ୟ ଗଣ ନାନା ଶାସ୍ତ୍ର ପରିମାଣି ।
ଲିଙ୍ଗମଧ୍ୟରେ ପଇତା ପକା ଚିହ୍ନ ଠାଣି ॥

ପରମାତ୍ମା ବାସୁଦେବ ପୀଠ ଏହି ଜାଣି ।
ହରି ହର ମୂର୍ତ୍ତି ବାବା କହିଲେ ବଖାଣି ॥

ଶୈବ କଳ୍ପଦ୍ରୁମ ଚିନ୍ତାମଣି ଆଦି ଗ୍ରନ୍ଥ ।
ଅନୁସାରେ ଲିଖାଇଲେ ଯାନି ଯାତ୍ରା ବୃତ୍ତ ॥

ଆଗମ ନିଗମ ମତେ ହେଲି ନିର୍ବିବାଦ ।
ବ୍ରାହ୍ମଣୁଁ ଚଣ୍ଡାଳ ଯାଏଁ ସେବନ୍ତି ପ୍ରସାଦ ॥

ପାତାଳ ଫୁଟନ୍ତା ଶମ୍ଭୁ ଲିଙ୍ଗ ହେ ମହେଶ ।
କୃପାକର ଅକିଞ୍ଚନେ ବିଶ୍ୱେ ଲଡୁକେଶ ॥

କେବଳ ତୁମ୍ଭର ଦୟା ହେବାକୁ ଅଧୀନ ।
ଜଣାଇଛି ପଦ୍ମ ପାଦେ ସଦା ଦୀନ ହୀନ ॥

ଇତି ପ୍ରଥମ ଭାଗ ।

# ଦ୍ୱିତୀୟ ଭାଗ

## ଦୈନିକ ନୀତି

ପ୍ରାତ ଅବକାଶ ଅଁଳା ଲାଗି ପଞ୍ଚାମୃତ ।
ବଲ୍ଲଭ ସକାଳ ଧୂପ ତଦନ୍ତେ ଆଗତ ॥
ତା' ପରେ–ସୁଆର–ମାଳି ପୁଡ଼ାଭଡ ଭୋଗ ।
କ୍ଷୀର ଅଭିଷେକ ଦ୍ୱିପ୍ରହର ଧୂପ ଯୋଗ ॥

ଦ୍ୱାର ପକାପରେ ଦିନମାନ ନୀତିସରେ ।
ଟେରଫିଟା ସନ୍ଧ୍ୟାନୀତି ସଞ୍ଜ ଧୂପପରେ ॥
ଚତୁଃସମ ସମାପନ ସେ ବଡ଼ସିଂହାର ।
ରଜନୀ ଅର୍ଦ୍ଧ ଉଭାନ୍ତ ପଡ଼େ ଘରଦ୍ୱାର ॥

ସକାଳ ଦୁଇପହର ସଞ୍ଜ ତିନି ଧୂପ ।
ଯଥା ସମୟରେ ଭୋଗ ହୁଏ ନାନା ରୂପ ॥
ଅଁଳାଲାଗି ପଞ୍ଚାମୃତ କ୍ଷୀର ଅଭିଷେକ ।
ସନ୍ଧ୍ୟା ମରଦନ ପରେ ଚତୁଃସମ ଲେଖ ॥

ବଡ଼ ସିଂହାରକୁ ମିଶି ପାଞ୍ଚ ଅବକାଶ ।
ଦିନ ଗତି ଲାଗିଥାଏ ଜାମ ପ୍ରଭୁ ପାଶ ॥

## ପ୍ରଭାତ ଅବକାଶ

ବାବାହେ ତୁମ୍ଭ ମହିମା ସୁମରି ମାନସେ ।
ପ୍ରଭାତ ଅବକାଶକୁ କହୁଛି ସାହସେ ॥
ଘଡ଼ି ପାହାନ୍ତିରୁ ମାଜି ପାଳିଆ ସେବକ ।
ଦିଅନ୍ତି ପହୁଡ଼ ଭଙ୍ଗା ଉଚ୍ଚେ ତିନି ଡାକ ॥
ସାବଧାନେ ଯୋଗନିଦ୍ରା ଭଙ୍ଗନ୍ତୁ ମଣିମା ।
ଶ୍ରୀଅଙ୍ଗ ନୀତି ବଜିବ ଏଣିକି ଜାଣିମା ॥

ବଡ଼ପଣ୍ଡା ସଙ୍ଗତରେ ଆସେ କାହାଳିଆ ।
ଆହୁରି ଆସନ୍ତି ପଡ଼ିଆରୀ ଯେ ପାଳିଆ ॥

ଫିଟାଏ ମାଜି ଦେଉଳ ଦୁଆର ଜାଳଣି ।
ଲଗାଏ ତରଳ ଦୀପ ପ୍ରଭୁ ନାମ ଭଣି ॥

ପୂଜକଙ୍କୁ ଗମ୍ଭୀରରେ ଦିଏ ଘିଅ ବତୀ ।
ବନ୍ଦାନ୍ତି ବଡ଼ ପଣ୍ଡାଏ ମଙ୍ଗଳ ଆଳତି ॥
ଏକାଳେ ବାଜେ ସ୍ୱରରେ ତ୍ରିବାର କାହାଳୀ ।
ଶୁଣିବା ଲୋକେ ଜାଣନ୍ତି ଏହି କଥା ଭଳି ॥

ଠାକୁର ବେଶ ଉଲଗି କରେ ମାଳାକାର ।
ଜଗଳ ଚନ୍ଦନ କାଢ଼ି ଢାଳେ ଜଳଧାର ॥

ଲିଙ୍ଗ ଶୁଦ୍ଧି କରି ପଣ୍ଡା ଜଳକୁ ଦିଅନ୍ତି ।
ଲିଙ୍ଗେ ପ୍ରତିବିମ୍ବେ ଦନ୍ତ ଧାପନ କରନ୍ତି ॥

ସଦାଶକ୍ତି ଯୁକ୍ତ ଲିଙ୍ଗ ଦୋଷ ଯିବାପାଇଁ ।
ବଟା ଅଁଳାଲଗି ପୀଠେ କରନ୍ତି ଗୋସାଇଁ ॥

ଘଟି ଛଡ଼ାଇ ମାଜିଏ ଜଗଇଲେ ସ୍ନାନ ।
ପଣ୍ଡା ପଞ୍ଚାମୃତ ଲିଙ୍ଗେ କରନ୍ତି ମର୍ଦ୍ଦନ ॥

ସ୍ନାନାନ୍ତେ ଶ୍ରୀଅଙ୍ଗ ପୋଛି ଖଟଣି ଲାଗିଲେ ।
ମଣ୍ଡନ୍ତି ଚନ୍ଦନ ବେଲପତ୍ରୀ ନାନା ଫୁଲେ ॥

ଅଷ୍ଟ ଦିଗେ ରଖାଯାଏ ଅଷ୍ଟନାଗ ଗୋତ୍ର ।
ମଧ୍ୟେ ଚନ୍ଦ୍ରଚୂଡ଼ ଉର୍ଦ୍ଧ୍ୱେ ଅଭିଷେକ ପାତ୍ର ॥

ପୋଛା ପଞ୍ଚାମୃତ ବଟା ବଡ଼ପଣ୍ଡା ଧରି ।
ଦର୍ଶକଗଣେ ଦିଅନ୍ତି ଅଳ୍ପ ଅଳ୍ପ କରି ॥

ରଜ୍ୟର ରଜବାଟୀକି ଚହୁଁ କିଛି ଯାଏ ।
ଅବକାଶ ପାଳି ମାଜି ରଜପୁରେ ନିଏ ॥

ତାପରେ ଶ୍ରୀଜଗନ୍ନାଥ ଅବକାଶ ବିଧି ।
ଠାକୁରାଣୀଙ୍କ ମାଜଣା ସ୍ନାନ ହୁଏ ବୃଦ୍ଧି ॥

ପାର୍ଶ୍ୱ ଦେବତାଦି ବେଢ଼ା ମଧ୍ୟେ ଯେତେ ଦେବ ।
ଏସମୟେ ସମସ୍ତଙ୍କ ସ୍ନାନ ବିଧି ହେବ ॥

ଅଁଳାଲାଗି ପଞ୍ଚାମୃତ ବେନି ଅବକାଶ ।
ସୂର୍ଯ୍ୟ ଉଦୟ ପୂର୍ବରୁ ହୁଅଇ ନିକାଶ ॥

ସମାପ୍ତ ହୋଇଲା ପ୍ରଭାତ ଅବକାଶ ନୀତି ।
ଶ୍ରୀ ଇତ୍‌କେଶ ମହେଶ ଚରଣେ ପ୍ରଣତି ।।

## ବଲ୍ଲଭ (କ) ସୂର୍ଯ୍ୟ ପୂଜା

ମନ୍ଦିର ପୁରୋଧା ପ୍ରତି ଦିବସ ସକାଳେ ।
ପଞ୍ଚ ଭୂଦସାରେ ଅଗ୍ନି ସ୍ଥାପି ରୋଷଶାଳେ ।।

ଦିଅନ୍ତେ ଆହୁତି ପାକଶାଳ ଶୁଦ୍ଧ ହୁଏ ।
ବ୍ରାହ୍ମଣ ସୁଆର ନିଆଁ ଚୁଲ୍ଲୀରେ ଲଗାଏ ।।

ଗୁଡ଼ିଆ ସୁଆର ନିଃସଙ୍ଖୁଡ଼ି ଚୁଲ୍ଲୀ ଜାଳି ।
ଖଇ, ଖଜା, କୋରା, ମୁଆଁ କରେ ଭର୍ଜି ଭର୍ଜି ।।

ଗୁଙ୍ଗଡ଼ାରେ ଭରି ତହିଁ ଧରି ଦହିବଡ଼ା ।
ମନ୍ଦିର ମଧ୍ୟକୁ ଆଣେ କରିଣ ସଜଡ଼ା ।।

ବେଢ଼ା ଅଗ୍ନି କୋଣେ ସୂର୍ଯ୍ୟପୂଜା ଅର୍ଘ୍ୟଦାନ ।
ମାଳି ପୂଜା ସଜ ମୁଆଁ ଆଣେ ସନ୍ନିଧାନ ।।

ପ୍ରତ୍ୟୂଷରେ ପୂର୍ବ ମୁଖେ ଦେବ ଦିବାକରେ ।
ପଣ୍ଡାଏ ପୂଜା କରନ୍ତି ଦଶ ଉପଚାରେ ।।

ଗୋରଚନା ବାଉଁଶୁଣୀ ଯବଧାନ ତିଳ ।
ଶୁକଳ ଶାଳୀ ସୋରିଷ ଶୁଆଁର ଖଉଳ ।।

କୁସ୍ତବେଲୀ ଫୁଲ ସହ କୁଶ ଅଗ୍ରେ ବାରି ।
ସୂର୍ଯ୍ୟେ ଅର୍ଘ୍ୟ ଦିଆଯାଏ ଯାହା ମିଳିପାରି ।।

ତେଜଷଣ ସମରପି ଯୋଡ଼ି ବେନି କର ।
ପଶ୍ଚାତେ ପ୍ରଣମି ପଣ୍ଡା ଉଠନ୍ତି ସତ୍ୱର ।।

## (ଖ) ଦ୍ୱାରପାଳ ପୂଜା

ଏଥୁ ଅନନ୍ତରେ ଦ୍ୱାରପାଳ ପୂଜା ହୁଏ ।
ଗୁଡ଼ାକାର ଗୋଲାକାର ମୁଆଁ ନେଇ ଥୁଏ ।।

ମୋହନ ମନ୍ଦିର ପୂର୍ବ ଭାଗ ଦ୍ୱାର ତଳେ ।
ପଶ୍ଚିମ ଦିଗରେ ଘଣ୍ଟ ବାଜଣା ଦେଉଳେ ।।

ସ୍ଥାପି ଭୋଗଦ୍ରବ୍ୟ ପିଢ଼ା ଘଣ୍ଟି ଗଡ୍‌ଡୁ ପାତ୍ରୀ ।
ଦ୍ୱାର ଦେହଳୀରେ ଆଗେ ବନ୍ଦି ଜାଳଘତ୍ରୀ ।।

ସେଠାରେ ଉରର ମୁଖେ ବଡ଼ପଣ୍ଡା ବସି ।
ପୂଜନ୍ତି ଦ୍ୱାରପାଳଙ୍କ ନାମେ ମନ୍ତ୍ର ଘୋଷି ।।

ଦକ୍ଷିଣ ଶାଖାରେ ଗଙ୍ଗାଦେବୀ ନନ୍ଦି କାଳ ।
ବାମ ଶାଖାରେ ଭୃକୁଟୀ ଯମୁନାର ମେଳ ।।

ଉପର ଏବୁଣ୍ଡି ବକ୍ଷେ ଲକ୍ଷ୍ମୀ ସରସ୍ୱତୀ ।
ତାଙ୍କ ନିକଟରେ ପୂଜା ପାନ୍ତି ଗଣପତି ।।

ପ୍ରତିଦିନ ପୂଜା ହୁଏ ପଞ୍ଚ ଉପଚାରେ ।
ଦ୍ୱାରପାଳ ପୂଜା ବିଧି ସରଇ ସେପରେ ।।

## (ଗ) ବାବାଙ୍କ ବଲ୍ଲଭ

ଖଇ ଦହି କୋରା ଖଜା ଖୁରୁମା ଗୁଙ୍ଗଡ଼ା ।
ବାବାଙ୍କ ବଡ଼ଦେଉଳ ମଧ୍ୟେ ହୁଏ ବଢ଼ା ।।

ଶକତି ବାଡ଼ ପୂର୍ବଦିଗ ଭାଗ ତଳେ ।
ଗୁଡ଼ିଆ ସୁଆର ଥୁଏ ବଲ୍ଲଭ ସକାଳେ ।।

ପ୍ରତି ପୂଜାରେ ପୂଜକ ଶକତି ଦକ୍ଷିଣେ ।
ପାଟ ପିଢ଼ାପରେ ବସି ପୂଜନ୍ତି ଆପଣେ ।।

ପୂଜା ଶେଷେ ନାରାୟଣୀ ପାଠେ ସମର୍ପଣ ।
କରନ୍ତେ ପ୍ରସାଦ ବୋଲି ହୁଏ ନିରୂପଣ ।।

ଶିବେ ଚଣ୍ଡେଶ୍ୱର ମାତଙ୍ଗିନୀ ଦେବୀଙ୍କର ।
ବିଷ୍ଣୁ ବିଶ୍ୱକ୍‌ସେନ ଗଣେଶ୍ୱରେ କୁଣ୍ଡୋଦର ।।

ଇଶାନ କୋଣରେ ଭୋଗ ଦଶଭାଗୁଁ ଭାଗେ ।
ଦିଅନ୍ତି ପୂଜକେ ଚଣ୍ଡ ନୈବେଦ୍ୟ ସରାଗେ ।।

ଠାକୁରଙ୍କର ପ୍ରସାଦ ଅମୂଲ୍ୟ ସୁସ୍ୱାଦ ।
କିଣନ୍ତି ଏକ ଥରକେ ଲୋକେ କରିବାଦ ।।

ଏ ଉରାନ୍ତୁ ଜଗନ୍ନାଥ ବାଡ଼ରେ ବଲ୍ଲଭ ।
ବଢ଼ଇ ବର୍ତ୍ତୁଳ ମୁଆଁ ସୁନ୍ଦର ଦରବ ।।

ଚକାମୁଖୀ ରଜା ମୁଖୀ ଭୋଗପାଣି ଦେବୀ ।
କୃତାର୍ଥ ହୁଅନ୍ତି ଜନେ ଲଭି ଭୋଗ ସେବି ॥

ପାର୍ଶ୍ୱ ଦେବାଦି ବେଢ଼ାର ଦେବତା ସକଳେ ।
ବହୁଳ ଚୋରୀ ହୁଅନ୍ତି ବେଳି ଘଡ଼ିବେଳେ ॥

ସରିଲେ ବହୁତ ବିଧି ବଢ଼ାଇ ତୁର୍ଣ୍ଣେ ।
ପୁଣ୍ୟ ଜନମାନଙ୍କୁ ତା ମିଳଇ ସୁଲଭେ ॥

ପୂର୍ବରୁ ମହାପୁରୁଷ ଖଞ୍ଜିଛନ୍ତି ଭୋଗ ।
ପ୍ରସାଦ ନାନା ପ୍ରକାର ପଦାର୍ଥେ ସଂଯୋଗ ॥

ଯେତେ କଉଡ଼ି ଖରଚ ହୁଏ ଭୋଗ ରଗେ ।
ସେତେ ବିକା ହୁଏ ଖରଚର ଅଧ ଭାଗେ ॥

ଆଗେ ବିଦେଶୀ ଯାତ୍ରୀଙ୍କି ଦିଆଯାଏ ସେଡ଼ି ।
ପଛେ ସ୍ୱଦେଶୀ ନିଅନ୍ତି ହିସାବକୁ ଯୋଡ଼ି ॥

ଅନୁମାନ କରନ୍ତୁ ଏ ସୁବିଧା କେମନ୍ତେ ।
ହୋଇଛି ପରକଲ୍ୟାଣେ ପାଠକେ ଧୀମନ୍ତେ ॥

ଶସ୍ତାରେ ମିଳିବ ଏତେ ଦ୍ରବ୍ୟ କେଉଁ ସ୍ଥାନ ।
କେ କରି ପାରିବ ଗୃହେ ହେଲେ ମହୀଯାନ ॥

ବହୁତ ଶେଷରେ ଯାତ୍ରୀ ନିଃସଂଖୁଡ଼ି ଭୋଗ ।
ନଡ଼ିଆ କନ୍ଦ କଦଳୀ ଚୁଡ଼ାଘଷା ଯୋଗ ॥

ପ୍ରତିଦିନ ଏହି ପରି ପୂଜା ଲାଗିଥାଏ ।
ଯଜମାନ ଉପାଧି ସକାଳ ଧୂପ ଯାଏ ॥

ସେହି ସମୟ ପର୍ଯ୍ୟନ୍ତ ଯାତ୍ରୀ ଦରଶନ ।
କରଇ ଥାନ୍ତି ସେବକମାନେ ପାଇଧନ ॥

## ପାଞ୍ଜୀ ଲୁହା

ବହୁତ ପରେ ଜ୍ୟୋତିଷୀ ଘଣ୍ଟାମୁରେ ଛିଡ଼ା ।
ସପତାଙ୍କ ଯୋଗ କହେ ଫେଡ଼ି ପାଞ୍ଜି ବିଡ଼ା ॥

ଯାନି ଯାତ୍ରା ପୁଣ୍ୟ ପର୍ବ ବିଷୟ ସକଳ ।
ଜଣାଇ ମୁଣ୍ଡିଅ ମାରି ଚଳଇ ଚଞ୍ଚଳ ॥

## ସକାଳ ଧୂପ

ବାବା ବିଭୋ ତବ ନାମ ଧରି ନିରବଧି ।
କହୁଛି ସକାଳ ଧୂପ ସଂଖୁଡ଼ି ଯେ ବିଧି ॥

ଅନ୍ନ ଣିଆ ବ୍ରାହ୍ମଣିଆ ପାଳିଆ ସୁଆର ।
ରୋଷ ଘରେ ସଜାଡ଼ିଣ ମନ୍ଦିରେ ବାହାର ॥

ବାଘ ମୁହଁ ଭିଡ଼ି ନ ବଜାଇ ରବି କର ।
ଭୋଗ ମଣ୍ଡାଇରେ ଟଳେ ଥାଳୀ ବେନିକର ॥

ଆଗେ ବେତ ଧରି ପଡ଼ିଆରୀ ଆଡ଼ହୌ ଡ଼ାକେ ।
ପୂର୍ବୁ ପାଣି ଛିଞ୍ଚିଥାଇ ମାଳି ବାଟ ଯାକେ ॥

ସାଦା ଖେଚେଡ଼ି କାନିକା ମିଠା ତେର ଥାଳି ।
ଖର ମରୀ ଘିଅ ଦିଆ ହିଙ୍ଗୁ ପାଣି ଡାଲି ॥

ଆଳୁ କଦଳୀ କଖାରୁ ସାରୁ ବାଇଗଣ ।
ଯେ ଋତୁରେ ଯା ମିଳଇ ପରିବା ତିଅଣ ॥

ଶାକ ସବଜିରୁ ହୋଇଥାଏ ଭଜା ଭଜି ।
ଚଣକ ଖଡ଼ା କୋଶଳା ହୁଏ ଶାଗ ଭଜି ॥

କଞ୍ଚା ମୁଗ ଯାଇ ଡାଲି ପଣସ ଆମ୍ବିଳ ।
ପାଣି କଖାରୁ ସାକେର କୋରା ନାରୀକେଳ ॥

ଥାଳୀ ଖେଚେଡ଼ିରେ ନିତି ଟଭ କଟା ହୋଇ ।
ଦିଆଯାଏ ତା ନୋହିଲେ ଦେବ ଧୂପ ନୋହି ॥

ଯେତେ ଅଭବ ହେଲେହେଁ କେଉଁ ଆଡ଼ୁ ଆସେ ।
ନିତି ଧୂପ ବେଳେ ଦିଆଯାଏ ପ୍ରଭୁ ପାଶେ ॥

କାକୁଡ଼ି ଦୁଇ ପ୍ରକାର ମୁଣ୍ଡି କର୍ଣ୍ଣଅଳି ।
କତାରି ଆଖୁ କମଳା ପାଚିଲା କଦଳୀ ॥

ଗୁଡ଼ ନବାତ ଲହୁଣୀ ଦଧି ଦୁଧ ଛେନା ।
ଲେଉଆ ଆମ୍ବ ଡାଳିମ୍ବ ଡାଳିମ୍ବ କରୁଣା ॥

ଦ୍ରାକ୍ଷା ମାତୁଲଙ୍ଗ ମକା ଜେଉଠ କାରଙ୍ଗ ।
ଏସବୁ ପଦାର୍ଥ ମାନ ବାବାଙ୍କର ଭୋଗ ॥

ଗୋଲ ମରିଚ ଲବଙ୍ଗ ଜିର ତେଜପତ୍ର ।
ଅଳାଇଚ ଯାଇଫଳ ମସଲା ପବିତ୍ର ।।
ଡାଲଚିନି ଗୁଡ଼ତ୍ୱକ କରପୁର ଦାନା ।
ଏହାଛଡ଼ା ଯେ ମସଲା ମନ୍ଦିରକୁ ମନା ।।
ଯେଉଁ ଜିନିଷରେ ଯାହା ଦରକାର ଜାଣି ।
ଗୁଣ୍ଡ କରି ଦୂପକାରେ ପକାଡିଣ ଆଣି ।।
ଶର୍ଚ୍ଛିବାଡ଼ ତଳେ ପୂର୍ବ ପାଖେ ରଖାଯାଏ ।
ଠାକୁରଙ୍କ ମହିମାରେ କି ମହକୁ ଥାଏ ।।
ପୂଜା ସଜ ଗମ୍ଭୀରର ଦକ୍ଷିଣ ପାଖରେ ।
ପାଳିଆ ମାଳି ରଖଇ ଷୋଡ଼ଷୋପର୍ୱରେ ।।
ଗଡ଼ୁ ପିଢ଼ା ପାତ୍ରୀ ଘଣ୍ଟି ଆଚମନ କୁଣ୍ଡ ।
ଘଷାଜଳ ପାତ୍ର ଆଦି କରେ ଏକ ରୁଣ୍ଡ ।।
ଆଗେ ପଡ଼େ ଟେଗବାଡ଼ କଳାହାଟ ଦ୍ୱାରେ ।
ବଡ଼ପଣ୍ଡା ବସି ପୂଜା କରେ ନିରହାରେ ।।
ବାଟଲ ଘଣ୍ଟା ମରଦାଙ୍ଗ ଘଣ୍ଟା ବଜା ବାଘ ।
ଟେକାହୋଇ ରହିଥାଏ ଛତି ବାନା ତ୍ରାସ ।।
ଧୂପ ଦୀପ ଆରତୀରେ କାହାଳୀ ବାଜଇ ।
ସରଗ ପୁର ଶୋଭକି ମରତେ ସାଜଇ ।।
ମନ୍ଦିର ପରିଛା ରୂପା ଛଡ଼ି ବାଡ଼ିକରେ ।
ଛିଡ଼ା ହୋଇଥାନ୍ତି ପାଟ ବୃଷଭ ପଛରେ ।।
ସୁଆର ଦିଅନ୍ତି ଶେଷ ବନ୍ଦାଣ ଆରତି ।
ନିର୍ବାପେଣ ପରୀକ୍ଷକ ଆଘ୍ରାଣ କରନ୍ତି ।।
ରଜାଙ୍କ ଆଶିଷ ବାକ୍ୟ ଉଚ୍ଚାରି ବଦନ ।
କରନ୍ତି ଶ୍ରୀଅଙ୍ଗ ଲାଗି ପ୍ରସାଦ ସେବନ ।।
ଘଷାଜଳ ବଣ୍ଟା ହୁଏ ଭକତେ ସାଦରେ ।
ଏମନ୍ତଭାବେ ସକାଳ ଧୂପବିଧି ସରେ ।।
ଏହି ରୂପେ ଧୂପ ହୁଏ ଜଗନ୍ନାଥ ବାଡ଼େ ।
ସୁଆର ତହିଁ ଖେଚେଡ଼ି ତିନି ଥାଳୀ ବାଢ଼େ ।।

ବଡ଼ପଣ୍ଡା ପୂଜା କରି ବନ୍ଦାଇ ଆରତି ।
ତାପରେ ଦେବୀ ମନ୍ଦିରେ ଚଳନ୍ତି ତଡ଼ତି ।।
ବାବାଙ୍କ ଥାଳି ଖେଚଡ଼ି ଅରପଣ କରି ।
ପୂଜନ୍ତି ପୂଜି ଖେଚଡ଼ି ଆଦି ବିଧି ଧରି ।।
ତହୁଁ ବୈଦ୍ୟନାଥେ ପୂଜା ପାଆନ୍ତି ଖେଚଡ଼ି ।
ମାଲ୍ଲତି ସାବିତ୍ରୀ ପୂଜା ବେଳ ଷଡ଼ ଘଡି ।।
ଧୂପ ଶେଷେ ପ୍ରତିହାରୀ ଆଣେ ଛେକ ବହି ।
ପ୍ରସାଦ ବିଛୀ ସଦନେ ଯତନେ ରଖଇ ।।
ବଡ଼ ଥାଳୀ ଖେଚେଡ଼ିରେ ତରକାରୀ ଗୋଳା ।
ବାଲ୍ୟଲୀଳା କରଯାଏ ଆଗେ ବାଢ଼ି ଗୁଳା ।।
ବାବାଜି ବୈଷ୍ଣବ ପାନ୍ତି ଅତିଥିଏ ଥୋକେ ।
ତଦନ୍ତେ କିଣି ନିଅନ୍ତି ଆରନ୍ଥକ ଲୋକେ ।।
ଯାଭଗ୍ୟରେ ଘଟେ ଯାହା ବାବାଙ୍କ ପ୍ରସାଦ ।
ପୋଇଲ ନୋହି କେହି କେହି ନଛଭେ ବିଷାଦ ।।
ଯାବତୀୟ ଖେତେ ପଣ୍ଡା ମାଢି ପର୍ଦ୍ଦିହାରି ।
ନିଅନ୍ତି ଯେ ଯାହା ଚଣ୍ଡ ଖେଇ ଚୁଣା ଗାରି ।।
ସକାଳ ଧୂପ ଭରାଷ୍ଟ ଯଯମାନଙ୍କର ।
ହଖୁଡ଼ି ଜିନିଷ ଖେଗ ଲାଗଇ ସତ୍ୱର ।।
ମନ୍ଦିର ଚରଗୁପତ ସମସ୍ତ ଦେଖନ୍ତି ।
ଶ୍ରୀ ଲିଙ୍ଗବାବାଙ୍କୁ ମନେ ସୁମରି ସନ୍ତତ ।।
ସକାଳ ଧୂପ ବିଧାନ ହେଲା ସମାପତ ।

## ସୁଆର ପୁଡ଼ା ଭୋଗ

ଶ୍ରୀଛାମୁରୁ ଛେକ ଯାନ୍ତେ ସେ ପାଳିଆ ମାଳି ।
ଗମ୍ଭୀରୀ ସଫେଇ କରେ ବହୁ ଜଳ ଢାଳି ।।
ସୁଆର ଶେଷ ରନ୍ଧଣା ଅନ୍ନ ତରକାରୀ ।
ଆଣନ୍ତି ବାର ପିରଳ ଆଟିକାରେ ବାଢ଼ି ।।
ରଖନ୍ତି ଯେ ଯାହା ପାଳ ବୃହତ ମନ୍ଦିରେ ।
କଳା ହାଟ ଦ୍ୱାର ପୂର୍ବ ତରଫ କନ୍ଦିରେ ।।

ଯୋଡ଼ିଏ ବଡ଼ ଏଣ୍ଡୁରି ପିଠା ତା ସହିତ ।
ଥୁଅନ୍ତି ବ.ବା ଯୋଗାଣ ନିମନ୍ତେ ଚହିଁତ ।।

ପାଳିଆ ପଣ୍ଡାଏ ଶିବ ମସ୍ତକୁ ଉତାରି ।
ପୂଜା କରନ୍ତି ବାବାଙ୍କ ମୂରତି ବିସ୍ତରି ।।

ସେଠାରୁ ପୂଜା ଉଠାଇ ନିଅନ୍ତି ସୁଆର ।
ସଫେଇ କରନ୍ତି ମାଳି ସେ ଘର ଦୁଆର ।।

ଦନା ବନାଇ ବନର ଶିଆଳି ପତରେ ।
ବହଳ କାଦୁଅ ଲିପି ତା ପଛ ପଟରେ ।।

ସେକି ଦିଅନ୍ତି ଜଳନ୍ତା ଚୁଲ୍ଲୀରେ ବସାଇ ।
ତହିଁ ପଡ଼ିବା ପ୍ରଭବ କଞ୍ଚା ମୁଗ ଯାଇ ।।

ଗଛନ୍ତି ସେବକେ ତାହା କଣ୍ଟ ପାଣି ଦେଇ ।
ସୁପକ୍ୱେ ପକାନ୍ତି ସଜ ଗୁଆ ଘିଅ ନେଇ ।।

ଠାକୁରେ ଭୋଗ ଲଗାନ୍ତି ବୋଲି ପୂଜାଗତ ।
ଶୁଣାଯାଏ ପୂର୍ବବର ଏମନ୍ତ ବୃତ୍ତାନ୍ତ ।।

## ମାଳି ପୂଜାଭୋଗ

ସୁଆର ପୂଜା ଉଠାରୁ ମାଳାକାର ପୂଜା ।
ମାଳିଙ୍କ ଶେଷ ଗନ୍ଧଣା ଘରୁ ଆସେ ତୋଡ଼ା ।।

ସେପରି ତେର ଆଟିକା ରଖନ୍ତି ସେ ଠାବେ ।
ଯେ ଯାହାର ପାତ୍ର ଚିହ୍ନି ନିଜ ଭକ୍ତି ଭବେ ।।

କାର୍ତ୍ତିକ, ମାଘ, ବୈଶାଖ ତିନି ଧର୍ମ ମାସ ।
ସୁଆର ମାଳିଙ୍କ ପୂଜା ଅଟଇ ବିଶେଷ ।।

ଯେ ଦିନ ଯେଉଁ ପାଳିଆ ମାଳି ତା ପୂଜନ୍ତି ।
ତାପରେ ଯେଝା ଆଟିକା ନେବାକୁ ଖୋଜନ୍ତି ।।

ଅଳାଡ଼ି ସଳିଳ ଧାର କରନ୍ତି ସଫେଇ ।
ମନ୍ଦିରର ଗୁରିଆଡ଼ ଦିଅନ୍ତି ନିକେଇ ।।

ସୁମରି ବାବାଙ୍କ ନାମ ମରମ କୋଠାରେ ।
ସରିଲା ମାଳିଙ୍କ ପୂଜା ପୂଜା ଏହିଠାରେ ।।

## କ୍ଷୀରାଭିଷେକ ନୀତି

ମାଳି ପୂଜା ପରେ କ୍ଷୀର ଅଭିଷେକ ନୀତି ।
ଦିନ ଏଗାର ଘଣ୍ଟାରେ କରଯାଏ ନିତି ।।

ପୂଜା ପାଳିଆ ମାଳିଏ ଗରିଆରେ ଭରି ।
ଜଳଶାୟୀ କରନ୍ତି ସେ ଶକ୍ତି ବନ୍ଦ ଧରି ।।

ଉଚ୍ଚରେ ଢ଼କା ପକାନ୍ତି ପ୍ରଭୁ ଗଙ୍ଗାଧର ।
ଜଗତ ମଙ୍ଗଳ କର ଦେବ ବାନାମ୍ବର ।।

ରହନ୍ତେ ବାବାଙ୍କ ପରେ ପାଣି ଏକାଙ୍ଗୁଳ ।
ବୁଲଇ ଭଉଁରୀ ରନ୍ଧ୍ର ଅଛି ମଧ୍ୟ ଚୂଳ ।।

ଖୋଲି ଦେଲେ ପାଦୋଦକ କୁଣ୍ଡେ ଗ୍ଳଲିଯାଏ ।
ଲିଙ୍ଗ ଶକତି ଉପରେ ଟୋପାଏ ନଥାଏ ।।

ସେ ପର୍ଯ୍ୟନ୍ତେ ଉପବାସେ ପୁରୋଧା ଗୋସାଇଁ ।
ଥାନ୍ତି ଶୁଚିବନ୍ତେ ପୀଠେ ବସନ୍ତି ସେ ଯାଇଁ ।।

କାୟା ଶୁଦ୍ଧି ଲିଙ୍ଗ ଶୁଦ୍ଧି କରିଯା ହେବତା ।
ଖଣ୍ଡ ଶାକର ପୂଜନ୍ତି ବାବାଙ୍କି ଦେବତା ।।

ପାଳିଆ ମାଳି ଯେ ଖଣ୍ଡା ଗୋରସକୁ ଆଣି ।
ଲେଶେ ପାଣି ନମିଶାଇ ଦିଏ ବାସେ ଛାଣି ।।

ପୁରୋହିତେ ଧରି ହାତେ ଅଭିଷେକ ପାତ୍ରେ ।
ରୁଦ୍ରାଭିଷେକ କରନ୍ତି ଶତ ରୁଦ୍ର ମନ୍ତ୍ରେ ।।

ଟଭକଟା ହୋଇ ଲିଙ୍ଗେ ଘଷାଯାଏ ବଢ଼େ ।
ତଦୂରାରେ ଶମ୍ଭୁ ସ୍ନାନ ରିତି ମତେ ବଢ଼େ ।।

ଖୋଲି ଦେଲେ ଗ୍ଳଲିଯାଏ ମଗରର ତୁଣ୍ଡେ ।
ଦେଉଳ ଲଗି ଉତ୍ତର ପାଦୋଦକ କୁଣ୍ଡେ ।।

ଏ ସମୟେ ଯଯମାନଙ୍କର ଜଳଶାୟୀ ।
କରଯାଏ ନିଃ ସଖୁଡ଼ି ଭୋଗ ଯାଉ ଧାଇ ।।

ଶ୍ରୀଅଙ୍ଗ ପୋଛି ଖଟଣି ଚନ୍ଦନ କୁସୁମେ ।
ନାଗକୁଳ ଚନ୍ଦ୍ର ଚୂଳ ଦ୍ୱିଅନ୍ତି ସୁଷମେ ।।

ଶ୍ରୀ ଲଡୁକେଶ ଚରଣ ପଙ୍କଜେ ବିଶ୍ୱାସ ।
ସରିଲ କ୍ଷୀରାଭିଷେକ ନୀତି ଅବକାଶ ॥

## ଦ୍ୱିପ୍ରହର ଧୂପ

ମଧ୍ୟାହ୍ନ କାଳରେ ବଢ଼େ ଦ୍ୱିପ୍ରହର ଧୂପ ।
ଯେମନ୍ତ ସକାଳ ଧୂପ ବିଧି ଅନୁରୂପ ॥
ମାଳୀ ଅନ୍ନ ଅଦା ଦିଆ ଦହି ତରକାରୀ ।
ଡାଲି ଭଜାଭଜି ଆମ୍ବିଳାକୁ ଆଦିକରି ॥
କାକେରା କ୍ଷୀରୀ କ୍ଷୀରିସା ଲଡୁ ଝିଲି ପିଠା ।
ବଢ଼ାମାନଙ୍କରେ ଦିଆଯାଇ ଥାଇ ମିଠା ॥
ପୂର୍ବ ପରି ଠାଆ ପିଡା ଠାକୁରଙ୍କ ଆଗେ ।
ପଣ୍ଡାଏ ପୂଜା କରନ୍ତି ବସି ଦକ୍ଷ ଭାଗେ ॥
ଶେଷରେ ପ୍ରସାଦ ବିଜେ କରନ୍ତି ସୁଆର ।
ପଲଙ୍କ ସୁପାତି ପଡ଼େ ପହୁଡ଼ ଦୁଆର ॥
ମୁଣ୍ଡରେ ମାଣ୍ଡି ମୁରୁଜି ଦୁଇ ହାତ ଗୋଡ଼େ ।
ପାଟ ତକିଆରେ ବେନି ପାଦୁକା ଯେ ପଡ଼େ ॥
ବିଛଣାରେ ଫୁଲ ବେଲ ପତ୍ରୀ ହୁଏ ବିଞ୍ଚା ।
ଚନ୍ଦନ କର୍ପୂର ନୀର ତା ଉପରେ ସିଞ୍ଚା ॥
କଳା ହାତ ଦ୍ୱାର ପାଶେ ପଡ଼େ ଟେରା ବାଡ଼ ।
ସେବକ କିଳନ୍ତି ଦ୍ୱାର କବାଟ ନିବାଡ଼ ॥
ପକାଇ କଞ୍ଚି କୋଲପ ଯାନ୍ତି ଯେଝା ଘରେ ।
ମନ୍ଦିର ଦ୍ୱାର ପଡ଼ଇ ଅଢ଼େଇ ପହରେ ॥
ତିନି ଅବକାଶ ବେନି ଧୂପ ଦିନ ନୀତି ।
ସରିଲ ଲଡୁ ବାବାଙ୍କ ଚରଣକୁ ଚିନ୍ତି ॥

## ଟେରା ଫିଟା

ଦିବସ ନୀତି ଭଲାନ୍ତୁ ଗତି କାର୍ଯ୍ୟମାନ ।
କହିବାକୁ ଭୟ ମନେ କାୟ କମ୍ପମାନ ॥
ବାବା ତବ ଲବ ଦୟା ସେବକରେ ହେବ ।
ବର୍ଣ୍ଣିବାକୁ ଟେରା ଫିଟା ବଳୁଛି ଆହାବ ॥

ବେଳ ଅନ୍ତ ନ ହେଉଣୁ ସେ କୋଠ ସୁଆର ।
ନିଃ ସଙ୍ଖୁଡ଼ି ରୋଷେ ପଶେ ଫିଟାଇ ଦୁଆର ॥
ଲଗାଇ ଚୁଲୀ ପିତଳ ପଲମ ବସାଇ ।
ଗରମ ଅଟାରେ ଟଙ୍କା ଛେନାକୁ ମିଶାଇ ॥
ଅମ୍ବିକା ବିଳାସ ପାରିଜାତକ ଗୋପାଳ ।
ଗୁଆ ଘିଅରେ ପୁଆଇ ଦିଏ ଚିନି ଢାଳ ॥
ଛେନା ନଡ଼ିଆ ରବିଡ଼ି କ୍ଷୀର ସର ପୁଳି ।
ତିଆରି କରଇ ପିଠା ସବୁ ସମେ ତୁଳି ॥
ବଶୀରୁ ସକାଳୁ ଆଣିଥିବା ଅଣ୍ଡା ପାଣି ।
ପଣା କରେ ବଢ଼ା ମାନଙ୍କରେ କନା ଛାଣି ॥
ତହିଁରୁ ବେନି ବଢ଼ାରେ ମାଣ୍ଡୁଅ ପକାଏ ।
ତିନି ବଢ଼ା ଛେନା ପଣା ଥାଳିରେ ଥକାଏ ॥
କର୍ପୂର ମରଡ଼ ଦେଇ ମିଶାଇ ମସଲ ।
ଚାଟ ଖଜା ନାମ ତାର ରଖେ ଏକ ଢାଲ ॥
ସୂର୍ଯ୍ୟବୁଡ଼ା ଫିଟିଗଲେ କବାଟ ଦେଉଳେ ।
ଦୀପାବଳୀ ବତିଜଳେ ଉଦ୍‌ବତୀ ଜୁହୁଳେ ॥
ଶେଯମାଣ୍ଡି ଟେକି ଖଟ ଆଣନ୍ତି ଘୁଞ୍ଚାଇ ।
ଟେରା ବାଡ଼ ପଡ଼ିଥାଏ ପାଣିକି ଛିଞ୍ଚାଇ ॥
ରୋଷଘରୁ ମାଳୀ ପଣା ବଢ଼ା ଥାଳିବଢ଼ା ।
କୋଠ ସୁଆର ଆଣନ୍ତି ଖଜାର ଗୁଙ୍ଗଡ଼ା ॥
ବେତଧରି ପ୍ରତିହାରୀ ଆଗେ ଆଗେ ଚଳେ ।
ଥୁଅନ୍ତି ଗମ୍ଭୀର ମଧ୍ୟେ ଶକ୍ତି ବାଡ଼ତଳେ ॥
ପଣ୍ଡା ବସନ୍ତି ଦକ୍ଷିଣ ଦିଗେ ପୂଜା କରି ।
ବାହାରେ ଘଣ୍ଟ ମାଦଳ ବାଜେ ତାଳଖୁରି ॥
ମୋହନ ମନ୍ଦିରେ ପାଟ ବୃଷଭ ପଛରେ ।
ଛଡ଼ି ଧରିଣ ପରିଛା ଛିଡ଼ା ଝିଙ୍କଳରେ ॥
ପୂଜା ଶେଷରେ ଲଗାଇ ସପତ ବରତି ।
ବାବାଙ୍କ ସନ୍ମୁଖେ ପଣ୍ଡା କରନ୍ତି ଆରତି ॥

ଆରତି ଠାକୁର ହୋଇ ସାରିବାର ପରେ ।
ଗ୍ରହଣ କରନ୍ତି ପରୀକ୍ଷକ ନିର୍ବାପରେ ॥

ସନ୍ଧ୍ୟା ନୀତି ଦରଶନେ ବିପ୍ରେ ସ୍ତୁତି ପାଠ ।
ସେବକେ ବାବାଙ୍କ ନାମେ କରନ୍ତି ଜୁହାଟ ॥

ଆନନ୍ଦ ଉଚ୍ଛୁଳି ପଡ଼େ ମନ୍ଦିର ଦୁଆର ।
ଯେସନ୍ତେ ପୂର୍ଣ୍ଣ ଜହ୍ନ ଗଡ଼େ ସମୁଦ୍ର ଜୁଆର ॥

ଚହୁଁ ଜଗନ୍ନାଥ ପାଠେ ଠାକୁରାଣୀଙ୍କର ।
ସଞ୍ଜଆଳତୀ ବାଜଇ ବଢ଼ାଇ ସୁନ୍ଦର ॥

ସୁସ୍ୱାଦୁ ସୁଲଭ ମୂଲ୍ୟ ଚାଟ ଖଜା ପଣା ।
କିଣି ଖାଇବା ପିଇବା ବ୍ୟକ୍ତି ବୁଦ୍ଧି ବଣା ॥

ସରିଲା ସନ୍ଧ୍ୟା ଆଳତି ଚାଟ ଚେରଫିଟା ।
ଗ୍ରାହକର ଏତେବେଳେ ଆଗେ ମୁଣ୍ଡ ପିଟା ॥

## ସନ୍ଧ୍ୟା ନୀତି

ଏଥୁ ଅନନ୍ତରେ କରଯାଏ ସନ୍ଧ୍ୟା ନୀତି ।
ପାଠକ ପଢ଼ାଏ ହେହୁଁ ଦେଖିଲେ ସେ ନୀତି ॥

ପୂଜା ପାଳିଆ ମାଜିଏ ଶ୍ରୀଅଙ୍ଗ ସୁବେଶ ।
ଲାଗି କରନ୍ତି ଫୁଲ ନରଗଣ ଲେଶ ॥

ଅଙ୍ଗ ପଖାଳନ୍ତି ବାମୀ ଶୁଦ୍ଧ ପାଣି ଆଣି ।
ଡାକ ଦିଅନ୍ତି ବାବାଙ୍କ ନାମ ଗୁଣ ଟାଣି ॥

ସହଜେତ ରଜାଙ୍କର ବାବା ଇଷ୍ଟଦେବ ।
ଲାଗି ଲାଗି ରାଜ୍ୟେ ଶତ୍ରୁ ଉପଦ୍ରବ ହେବ ॥

ତସ୍ତ ଜନ୍ତ ପ୍ରମାଣରେ ତିଳ ତେଲଧାର ।
ସନ୍ଧ୍ୟାରେ ମର୍ଦନ କରଯାଏ ଲିଙ୍ଗ ସାର ॥

ଦୃଢ଼ ଘରଷଣ କରୁଁ ଶମ୍ଭୁ ଉପରେଣ ।
ମଣିଷ ମୁଣ୍ଡ ପଗଏ ବାହାରଇ ଫେଣ ॥

ତଦୁରାଚର ଶକ୍ତି ଛିଦ୍ରେ ଦେଇ କନା ମୁଦ ।
ପୂର୍ଣ୍ଣ ଚଳଶାୟୀ ପାଇଁ ନ ଦଢ଼ନ୍ତି ଭଦ ॥

ବୁଡ଼ିଯାନ୍ତେ ମଥାପରେ ଅଛି କ୍ଷୁଦ୍ର କଣା ।
ମାରେ ଭହିଁରୀ କେଉଁଠି ନପଡ଼ଇ ଜଣା ॥

ମାଜି ସେବକ ଡାକନ୍ତି ଅତି ଉଚ୍ଚ ସ୍ୱରେ ।
ପଡ଼ଇ କାନ ଅତଡ଼ା ଶୁଣି ଥରେ ଥରେ ॥

ଖୋଲିଦେଲେ ନଳ ଜଳ ପାଦୋଦକ କୁଣ୍ଡେ ।
ବହିଯାଏ ବାହାରକୁ ମଗରର ତଣ୍ଡେ ॥

ଶ୍ରୀଅଙ୍ଗ ପୋଛି ଖଟଣି ଗୋଟି ଲଗି କରି ।
ଚନ୍ଦନ ତୁଳସୀ ଫୁଲ ବେଲ ପତ୍ର ଭରି ॥

ପୂଜା ହୁଏ ଶରପଣା ପାରିଜାତ ଖଜା ।
ଥାଳିରେ ତାହା ସହିତ ସଜ ଚୁଡ଼ାଭଜା ॥

ଉପସ୍ଥିତ ଯେ ବ୍ରାହ୍ମଣ ଖଏରତ ପାଏ ।
ଖାଇପିଇ ରଜାଶିଷ ଦେଇ ଗ୍ୱଲିଯାଏ ॥

ଏ ସମୟେ ଯଯମାନ ମାନେ ଭକ୍ତିମନେ ।
ନିଃସଖୁଡ଼ି ଭେଗ ରଗ କରନ୍ତି ଦର୍ଶନେ ॥

ସନ୍ଧ୍ୟାନୀତି ମରଦନ ଜଳଶାୟୀ ଶେଷ ।
ଚିନ୍ତାକରି ହୃଦୟରେ ପ୍ରଭୁ ଲତୁକେଶ ॥

## ସଞ୍ଜ ଧୂପ

ସନ୍ଧ୍ୟାନୀତି ସରିଯାନ୍ତେ ହୁଏ ସଞ୍ଜଧୂପ ।
ଦୁଇପହର ସଖୁଡ଼ି ଧୂପ ଅନୁରୂପ ॥

ଘଣ୍ଟବଜା ଘରେ ଠିଆ ହୋଇ ଯେସନ୍ତେ ମାଇ ।
ନାପିତ ଦେଖାଉଥାଏ ଦୋପଖା ମସାଲ ॥

ଦିବ୍ୟଶାଳୀ ଅନ୍ନ ଡାଲି ତରକାରୀ ଭଜା ।
ଠାକୁର ମନ୍ଦିରେ ଆସେ ହୋଇ ସାଜସଜା ॥

ପୂଜା ଶେଷରେ ସେବାଶୀ କରି ବଣ୍ଟାବଣ୍ଟି ।
ନିଅନ୍ତି କେତେକ ବିକ୍ରୀ ହୁଏ କଣ୍ଟାକଣ୍ଟି ॥

ଏହି ସମୟେ ସଖୁଡ଼ି ନିଃ ସଖୁଡ଼ି ଭୋଗ ।
ପଡ଼ିଯାଏ ଯଯମାନୀ ଦରଶନୀ ଯୋଗ ॥

ଅନନ୍ତର ଜଗନ୍ନାଥ ସନ୍ଧ୍ୟାଧୂପ ବଢ଼େ ।
ତତ୍କ୍ଷରେ ନଇବେଦ୍ୟ ଠାକୁରଣୀ ବାଢ଼େ ॥

ଘଡ଼ି ତିନି ରଜନୀକି ସଞ୍ଜଧୂପ ସରେ ।
ଶ୍ରୀଲଡ଼ୁକେଶ ମହେଶ ଭଜେ ମାନସରେ ॥

## ଚତୁଃସମ ନୀତି

ପହରେ ରତିକି ହୁଏ ନୀତି ଚତୁଃସମ ।
ମାଳିଏ କାଢ଼ନ୍ତି ବେଲ ପତ୍ରରେ କୁସୁମ ॥

ରୀତି ମତେ ସ୍ନାନ ବଢ଼େ କରି ପୋଛାପୋଛି ।
ଖଟଣି ଲଗି କରନ୍ତି ଲିଙ୍ଗେ କାଛିକୁଛି ॥

ରୂପା ଗିନାରେ ଅଷ୍ଟଜୀ ପ୍ରମାଣ ଚନ୍ଦନ ।
ବ୍ରହ୍ମଲିଙ୍ଗରେ ପଣ୍ଡାଏ କରନ୍ତି ମର୍ଦ୍ଦନ ॥

ଗଙ୍ଗା ଉଦକ କେଶର କୁଙ୍କୁମ କସ୍ତୁରୀ ।
କଳା ଅଗୁରୁ କଙ୍କୋଳା କରପୂର ଚୂରି ॥

ଦିଅନ୍ତି ପୁଡ଼ା ପାଳିଆ ଆଣିଥିବା ଫୁଲ ।
ବେଲ ପତର ତୁଳସୀ କରି ସମତୁଲ ॥

ନାଗକୁଳ ଚନ୍ଦ୍ରକୁଳ ଊର୍ଦ୍ଧ୍ୱେ ଦିଆଯାଏ ।
ବ୍ରାହ୍ମଣେ ଗୀତଗୋବିନ୍ଦ ଗାଥା ଗାଉଥାଏ ॥

ଥାଳିରେ ଭରି କାକେର ପିଠା ହୁଏ ଭୋଗ ।
ରତି ପହରକଠାରେ ଚତୁଃସମ ଯୋଗ ॥

ଏକାଳେ କହାଳୀ ଧ୍ୱନି ବାଜିଛି ଯାକାନେ ।
ପାପ ତାପ ତେଜି ପୁଣ୍ୟ ଅର୍ଜ୍ଜିଛି ସେ ଜ୍ଞାନେ ॥

ଶେଷ ହେଲ ଚତୁଃସମ ନୀତି ଅବକାଶ ।
ଶ୍ରୀଲଡ଼ୁକେଶ ଚରଣ କମଳକୁ ଆଶ ॥

## ବଡ଼ ସିଂହାର

ଚତୁଃସମ ସମାପତେ ସେ ବଡ଼ ସିଂହାର ।
ଶେଷ ଅବକାଶ ପ୍ରଭୁ ଡମ୍ବରୁ ବିହାର ॥

ନିଃ ଅଖୁଡ଼ି ଗେନ୍ଦ ଘଣ୍ଟ ସେ କୋଠ ସୁଆର ।
ବଢ଼ତାଟେ ଖଜା ଆଣେ କରିଣ ତିଆର ॥

ଗଜା କଦମ୍ବା ଯେ ସର ସୁଆରି ବୁନ୍ଦିଆ ।
ପାରିଜାତ ମାଲପୁଆ ଛେନାର ତାଡ଼ିଆ ॥

ସଜାଡ଼ି ରଖେ ଦେଉଳେ ଶଙ୍ଖ ବାଡ଼ ତଳେ ।
ବଡ ପଣ୍ଡାଏ ପୂଜନ୍ତି ଭକ୍ତି ଭାବ ମେଳେ ॥

ବିଜୟଚନ୍ଦ୍ର ଶେଖର ପାର୍ବତୀ ପ୍ରତିମା ।
ଏକାନ୍ତ କ୍ରୀଡା କୌତୁକେ ପର୍ଯ୍ୟଙ୍କର ସୀମା ॥

କଳା ହାଟ ଦ୍ୱାରେ ଖଟ ଶେଯ ମାଣ୍ଡି ପଡ଼େ ।
ପୂରବ ପରି କଠାଉ ରଖି ପଣା ବଢ଼େ ॥

ନଇବେଦ୍ୟ କରି ତହିଁ ଦେଇ ପୁଷ୍ପାଞ୍ଜଳି ।
ପକାନ୍ତି ଗନ୍ଧ ଉଦକ ଘନ ସାର ଦଳି ॥

ଲଡ଼ୁ ବାବା ନିଜେ ବିଜେ ଶେଯେ ଭଳି ମତି ।
ସପତ ଘୃତ ବତୀରେ କରନ୍ତି ଆରତି ॥

ଏକାଳେ କାହାଳୀ ବାଜେ ଅତି ଚମତ୍କାର ।
ଆରତ ତାରଣ ଡାକ ପଡ଼େ ବାଟମ୍ବାର ॥

ପିଣ୍ଡିକାରୁ ପଣ୍ଡାଆଣି ଉମା ମହେଶ୍ୱର ।
ପାଟ ବୃନ୍ଦଳ ପଛରେ ତମ୍ବୁ ଉପର ॥

ବସାଇ ଦେବ ଦମ୍ପତି ଯୁଗଳ ମୂରତି ।
ଖଜା ପୂଜା ପୁଷ୍ପାଞ୍ଜଳୀ ଆଳତି କରନ୍ତି ॥

ବାଜେ ନିଶାଥ କାହାଳୀ ନାଦ ଚମତ୍କାର ।
ଅର୍ଦ୍ଧ ଯୋଜନା ପର୍ଯ୍ୟନ୍ତ ଶୁଭେ ତା ଫୁତ୍କାର ॥

ଜଗନ୍ନାଥ ଦୁର୍ଗାଦେବୀ ପୀଠେ ଯଥାରୀତି ।
ବଢ଼ଇ ବଡ ସିଂହାର ବେଶ ଶେଷ ନୀତି ॥

ପଡ଼ଇ ସବୁ ଦେଉଳେ ଦୁଆର କବାଟ ।
ଭିତର ଅର୍ଗଳୀ ମେଲି କିଳନ୍ତି ନିଘଟ ॥

ବାହାର କଡାରେ ଆଣ୍ଡ ତାଲ କର୍ଣ୍ଣପଟେ ।
ବେଢ଼ା ବାହାର କବାଟ ଦିଆଯାଏ ବଢ଼େ ॥

କଣ୍ଠିକାଠି ସୂତ୍ରେ ରଖି ସେ ପାଳିଆ ମାଜି ।
ଘଣ୍ଟବଜା ଘରେ ଶୁଏ ମନ୍ଦିର ଜଗାଳି ॥

ପାଳିଆ ପାଇକ ମାନେ ମୁଖଶାଳା ବାସେ ।
ମନ୍ଦିର ଜଗି ଶୁଅନ୍ତି ଲୁଷା ରଖି ପାଶେ ॥

ଯେ ଯାହା ପୁରେ ଯାନ୍ତି ସେବକ ସରବ ।
ସରିଲା ବାବାଙ୍କ ବଡ ସିଂହାର ପରବ ॥

ଶ୍ରୀଲତ୍ତ୍ୱକେଶ ଚରଣେ ସଦା ଥାଉ ମତି ।
ଦୈନିକ ନୀତି ବିଷୟ ହେଲା ସମାପତ ॥

ଜୟ ହେ ମଙ୍ଗଳମୟ ଦେବ ସଦାଶିବ ।
ଜୀବ ଥିବା ଯାଏ ତବ ଶ୍ରୀପଦ ଭଜୀବ ॥

ଭବୁଥିବି ଅବିରତ ଦେବା ହେବେ ବର ।
ଅନ୍ୟ ବରେ କାର୍ଯ୍ୟ ନାହିଁ ପରମ ଈଶ୍ୱର ॥

୨ୟ ଭାଗ ସମାପ୍ତ

# ତୃତୀୟ ଭାଗ

## ବେଢ଼ା ପରିକ୍ରମା

### (କ) ସୋମବାର ବେଢ଼ା

ବରଷକ ପ୍ରତି ସପ୍ତାହରେ ସୋମବାର ।
ଗୋଟିଏ ପରବ ଦିନ ଶିବ ଦେବଙ୍କର ॥

ସେଦିନ ସକାଳ ଧୂପ ବଢ଼ିଗଲା କ୍ଷଣି ।
ବାର କୁଞ୍ଜ ଚଉଦୋଳ ମଣ୍ଡନ୍ତି ମଣ୍ଡଣି ॥

ନାନାରଙ୍ଗ କନାଛରି ଝାଲର କଳଶେ ।
ବେଢ଼ାନ୍ତି ପାଟ ପତନି ମାଳୀ ନିରଳସେ ॥

ଚନ୍ଦ୍ରଶେଖର ବାବାଙ୍କ ବିଜୟ ପ୍ରତିମା ।
ଉପମା ନାହିଁ ନୋହିବ କାହିଁ ମହୀ ସୀମା ॥

ମୋହନ ବାସେ ବସାଇ ଚଉକି ଉପରେ ।
ପଣ୍ଡାଏ କରନ୍ତି ବେଶ ବିବିଧ ରୂପରେ ॥

ଅମୂଲ୍ୟ ସୁନେଲି ପାଟ ପିନ୍ଧାଇ ଶ୍ରୀଅଙ୍ଗେ ।
ଘେରାଇ ପ୍ରଭା ଦୋଷରି କୁଞ୍ଚ ଛାଡ଼ି ରଙ୍ଗେ ॥

ମଣ୍ଡନ କରନ୍ତେ ହାର କିରୀଟ କୁଣ୍ଡଳ ।
କି ସୁନ୍ଦର ଦିଶେ ତନୁ ବଦନ ମଣ୍ଡଳ ॥

ଦ୍ୱିତୀୟା ସୋମ ଚନ୍ଦ୍ରମା ଖଞ୍ଜା ଗନ୍ଧ ଚୂଳେ ।
ଛାତିରେ କର୍ପୂର ମିଶା ଚନ୍ଦନର ଗୁଚ୍ଛେ ॥

ଦିଅନ୍ତି ବେଲ ପତର ଫୁଲମାଳା ଉରେ ।
ଫୁଲଟାହିଆ ମୌଳୀରେ ବଳୟ ବାହୁରେ ॥

ଜକ ଜକ ସ୍ୱର୍ଣ୍ଣରଳ ପଦକ ବେକରେ ।
ପଣ୍ଡାଏ ଉଠାଇ ଚଉକିରୁ ବେନି କରେ ॥

ପ୍ରତିମା ପ୍ରଭକୁ ଧରି ଦକ୍ଷିଣ ଦୁଆରେ ।
ଉଭା ହୁଅନ୍ତେ ଆଳତି ଲଗାଇ ସୁଙ୍ଗରେ ॥

ଆଣନ୍ତେ ବଡ଼ ପଣ୍ଡାଏ କରନ୍ତି ବନ୍ଦାଣ ।
ବାଜେ ବିଜୟ କାହାଳୀ ଘଣ୍ଟର ଛିଣ୍ଡାଣ ॥

ମନ୍ଦିରୁ ଠାକୁର ବିଜେ ହୋଇବା ମାତ୍ରକେ ।
ଛଡ଼ିଧରି ଆଗେ ଆଗେ ଯାନ୍ତି ପରୀକ୍ଷକେ ॥

ଏକବାର ପ୍ରଦକ୍ଷିଣେ ମଣ୍ଡିତ ବିମାନେ ।
ବିଜେ କରନ୍ତି ପ୍ରତିମା ବିପୁଳ ସମ୍ମାନେ ॥

ମାର୍ଜ୍ଜି ପଣ୍ଡାଏ ପକାନ୍ତି ଆଇଟ ଗ୍ୱମର ।
ଆଗେ ଛତି ଭ୍ରାସ ବାନା ଧ୍ୱନି ମରମର ॥

ଗୁଡ଼ା ପାଳିଆ ମାଳିଏ ଚଉଦୋଳ କାନ୍ଧେ ।
ବେଢ଼ା ବୁଲନ୍ତି ଦକ୍ଷିଣ ଦିଗରୁ ଆନନ୍ଦେ ॥

ଘଣ୍ଟ କାହାଳ ଶବଦ ପଡ଼ଇ ଉଚ୍ଛୁଳି ।
କେ କହି ପାରିବ ସେହି କୌତୂହଳ ତୁଳି ॥

ତିନିବାର ପରିକ୍ରମା କରନ୍ତେ ସଧୀରେ ।
ପୂର୍ବେ ବିମାନ ଥୋଇ ଠାକୁରଙ୍କୁ ଧୀରେ ॥

ଆଣି ମୁଖଶାଳାରେ ସେ ଗାଦିରେ ବସାନ୍ତି ।
ଆଗରେ ଘଣ୍ଟ ମର୍ଦ୍ଦନ କାହାଳ ବଜାନ୍ତି ॥

ବେନି ଥାଳି ଉଖୁଡ଼ାକୁ ଷୋଳ ଉପଗ୍ୱରେ ।
ନୈବେଦ୍ୟ କରି ଆଳତି ବନ୍ଦାନ୍ତି ସୁସ୍ୱାରେ ॥

ଖଟୁଲିରୁ ଠାକୁରଙ୍କୁ ଭିତରେ ନିଅନ୍ତି ।
ବେଶ ଓହ୍ଲାଇ ପିଣ୍ଡିକା ଉପରେ ଥୁଅନ୍ତି ॥

ପୂର୍ବେ ଦେବ ଦୈତ୍ୟ ବଳେ ମନ୍ଥିଲେ ବାରିଧି ।
ପାଇବାକୁ ଧନ ଅଷ୍ଟରନ୍ ଅଷ୍ଟନିଧି ॥

ଖୁଆ ଦଣ୍ଡକଲେ ତହିଁ ମନ୍ଦର ଶିଖରୀ ।
ବାସୁକୀ ନାଗ ରଜ୍ଜାକୁ ମଧ୍ୟେ ଗୁଣ କରି ॥

ଧରିଲେ ମସ୍ତକ ଭଗ ଟାଣି ନିଶାଚରେ ।
ବୁଲାଇଲେ ଲଙ୍ଗୁଳକୁ ଧରି ସୁର ବରେ ॥

ଅହିକାତେ ଉତଲାନ୍ତେ ଉଦ୍‌ଗାରନ୍ତେ ବିଷ ।
ମହାଜ୍ୱାଳା ଜାଳି ପକାଇଲା ଦଶ ଦିଶ ॥

ଦେବାସୁର ନିବେଦନେ ବିଭୁ ମୃତ୍ୟୁଞ୍ଜୟ ।
କବଳେ କଲେ ସବଳେ ହଳା ହଳମୟ ॥

ଯାବତ କାଳକୁ କଳା ପଡ଼ିଗଲା ଗଳା ।
ନୀଳକଣ୍ଠ ନାମ ତେଣୁ ବୋଲାଇଲେ ଭୋଳା ॥

ବିଷ ଜ୍ୱାଳା ଯିବା ଲାଗି ମୁଣ୍ଡେ ଗଙ୍ଗା ବାରି ।
ବୁହାଇଲେ ସଦା ସୁଧା ଧାର ଶଶଧାରୀ ॥

ଗଙ୍ଗାଦେବୀଙ୍କ ଗିରୀଶ ତୋଷେ ଦେଲେ ବର ।
ମୋର ପତ୍ନୀ ହୋଇ ତୁମ୍ଭେ ଥିବ ମସ୍ତକର ॥

ଚନ୍ଦ୍ରଙ୍କୁ କହିଲେ ରୁଦ୍ର କଲ ଉପକାର ।
ଯାତ୍ରା କରୁଥିବୁଁ ତୁମ ନାମେ ସୋମବାର ॥

ସେହି ଦିନୁ ବେଢ଼ା ପରିକ୍ରମା ହରଗୃହେ ।
କରଯାଏ ସୋମବାରେ ଶାସ୍ତ୍ର ମତେ ସ୍ନେହେ ॥

ସୁମରି ଲଡୁ ବାବାଙ୍କ ମହିମା ବିଶେଷ ।
ସୋମବାର ବେଢ଼ା ପରିକ୍ରମା ହେଲା ଶେଷ ॥

## (ଖ) ଚତୁର୍ଦ୍ଦଶୀ ବେଢ଼ା

ମାସକର ଦୁଇପକ୍ଷ ତିଥ ଚତୁର୍ଦ୍ଦଶୀ ।
ପାର୍ବତୀ ବଲ୍ଲଭଙ୍କର ବ୍ରତ ବେନି ନିଶୀ ॥

ଟେର ଫିଟା ପରେ ବେଢ଼ା ବୁଲକୁ ବାହାର ।
ଖଟନ୍ତି ସେବକେ ନିଯୋଗରେ ଯେ ଯାହାର ॥

ପ୍ରଦୋଷ ବ୍ୟାପିନୀ ତିଥି ବେଢ଼ା ପରିକ୍ରମା ।
ଚଉ ଦୋଳରେ ବସାଇ ବିଜୟ ପ୍ରତିମା ॥

ପ୍ରତି ସୋମବାର ବେଢ଼ା ସମ ଦିବ୍ୟ ସାଜେ ।
ଟେକନ୍ତି ଛତି ତରସ ବାଜା ଘଣ୍ଟ ବାଜେ ॥

ଲୁହାକଡ଼ା ଲଗା ପାଦ ପକାଇ ଖୋପରେ ।
ଜଣେ ମାଳି ଚଢ଼େ ବଡ଼ ଦେଉଳ ଉପରେ ॥

ରେଖ ଦେଉଳର ଉଚ୍ଚ ଅଗ୍ର ଶ୍ରୀ ସମୀପ ।
ବେଢ଼ା ବୁଲ ବେଳେ ଜାଳେ ତିନି ମଦାଦୀପ ॥

ଚନ୍ଦ୍ର ଉଦିଆ ଉପରୁ ତଳକୁ ଆଲୋକ ।
ଝଲଇ ବିଜୁଳୀ ବତୀ ପରି ନିରିମଳ ॥

ସର୍ବ ସାଧାରଣଙ୍କର ମଙ୍ଗଳ ନିମିତ୍ତ ।
ଉଚ୍ଚ ସ୍ୱରେ ଡାକଦିଏ ପ୍ରଭୁ ଭୋଳାନାଥ ॥

ତିନି ବେଢ଼ା ବୁଲି ପରେ ବଡ଼ଦେଉଳକୁ ।
ବିଜୟେ କରନ୍ତି ନିଜେ ବସିବା ସ୍ଥଳକୁ ॥

ଦୁଇ ଥାଳିରେ ଭଙ୍ଗୁଡ଼ା ହୁଏ ନଇବେଦ୍ୟ ।
ବାଜଇ ଘଣ୍ଟ କାହାଳୀ ଆଦି ନାନା ବାଦ୍ୟ ॥

ପୂର୍ବେ ତ୍ରିପୁର ଦାନବ ଶିବଙ୍କ ଭକତ ।
କେତେ କାଳେ ହେଲା ସେହି ବଇରି ଶକତ ॥

ତାକୁ ମାରିବାକୁ ଦେବେ ସର୍ବେ ହେଲେ ରଥ ।
ନାଶିଲେ ପାଶୁ ପତରେ ଶମ୍ଭୁ ଶୂଳ ହସ୍ତ ॥

ସେହି ତିଥି ଚୈତ୍ର ମାସ ଶୁକ୍ଳ ଚତୁର୍ଦ୍ଦଶୀ ।
ଦମନକ ନାମ ତାର ଦେଲେ ସୁରେ ରସି ॥

ପାସୋର ନଯିବା ପାଇଁ ଭିଆଇଲେ ଯାତ ।
ସେହି ଦିନୁ ହୁତି ଚତୁର୍ଦ୍ଦଶୀ ବେଢ଼ା ଖ୍ୟାତ ॥

ଚତୁର୍ଦ୍ଦଶୀ ବେଢ଼ା ପରିକ୍ରମା ବିଧି ଶେଷ ।
ସତିଙ୍କ ସୁମରି ବାବାଙ୍କର ପାଦଦେଶ ॥

## ଚତୁର୍ଦ୍ଦଶ ଯାତ୍ରା

ଚତୁର୍ଦ୍ଦଶ ଯାତ୍ରା ଶେଷ ଇତୁ ବାବାଙ୍କର ।
ବ୍ରତ ଉପବାସ ଆଚରନ୍ତି ନାରୀ ନର ॥

ପ୍ରଥମ ଅଷ୍ଟମୀ ପ୍ରାବରଣ ଷଷ୍ଠୀ ଯାତ ।
ପୁଷ୍ୟାଭିଷେକ ମକର ସଂକ୍ରମଣ ଖ୍ୟାତ ॥

ଚନ୍ଦ୍ରଭଗା ସପତମୀ ପରେ ଶିବରାତ୍ର ।
ଅଶୋକାଷ୍ଟମୀ ଦମନ ଚତୁର୍ଦ୍ଦଶୀ ମାତ୍ର ॥

ଅକ୍ଷୟ ତୃତୀୟା ପରଶୁରାମ ଅଷ୍ଟମୀ ।
ଶୟନକ ଚତୁର୍ଦ୍ଦଶୀ ସମୀପରେ ଗମି ॥

ପବିତ୍ରାରୋପଣ ଯମ ଦ୍ୱିତୀୟା ବିଖ୍ୟାତ ।
ଉଥାପନ ଚତୁର୍ଦ୍ଦଶୀ ମିଶି ଚୌଦ ଯାତ ॥

ଏକାମ୍ର ଲିଙ୍ଗ ପୁରାଣେ ଏକଥା ଉଦିତ ।
କାଳ କ୍ରମେ ହେଲା ଦେଶ ବିଦେଶ ବିଦିତ ॥

## ପ୍ରଥମାଷ୍ଟମୀ

ମାର୍ଗଶିର କୃଷ୍ଣ ପକ୍ଷ ତିଥି ଯେ ଅଷ୍ଟମୀ ।
ବାବାଙ୍କ ପ୍ରଥମ ଯାତ୍ରା ହିମତରେ ଗମି ॥

ବରଷକେ ଆଦ୍ୟ ପର୍ବ ଗାଆଁ ଗହଳରେ ।
ଜାଣି ବାବା ଯାତ୍ରା କଲେ ବଡ଼ ଦେଉଳରେ ॥

ଏଦିନ ସକାଳ ଧୂପ ବଢ଼ଇ ସଅଳେ ।
ଖେଚଡ଼ୀ ସଙ୍ଗତେ ପର୍ବ କ୍ଷୀରୀ ପିଠାବଳେ ॥

ଦଶ ହଜାର ପର୍ଯ୍ୟନ୍ତ ହେବେ ଯାତ୍ରାକାରୀ ।
ଦେଶ ବିଦେଶୁଁ ଆସନ୍ତି ସେ ଦେଖଣାହାରୀ ॥

ଆସନ୍ତି ବ୍ରତୀ ସ୍ନାତୁ ନୂଆ ଲୁଗା ପିନ୍ଧି ।
ଗୁବାକ ଅକ୍ଷତ ପୁଷ୍ପ ବସନରେ ବାନ୍ଧି ॥

ଲୋକ ଭିଡ଼େ ଦରଶନ ମିଳଇ ଅଳପ ।
କରନ୍ତି ଆରମ୍ଭ ଯାତ୍ରା ପାଇଁ ସଙ୍କଳପ ॥

ଗୁଆ ଚାଉଳ ମନ୍ଦିର ପୁରୋଧାଙ୍କୁ ଦେଇ ।
ଜଳ ପାତ୍ରୀ ଧରି ହାତେ କୁଶ ବଟୁ ନେଇ ॥

ଦେଶ କାଳ-ପାତ୍ର-ନାମ- ଗୋତ୍ରେ ହୁଏ ବାକ୍ୟ ।
ଶେଷେ ଦକ୍ଷିଣା ଦିଅନ୍ତି ଯାତ୍ରୀ ଯାହା ଶକ୍ୟ ॥

ଆଶୀର୍ବାଦ କରି ଛାଡ଼ି ଦିଅନ୍ତି ଗୋସାଇଁ ।
ତାପରେ ଅନ୍ୟ ମନୁଷ୍ୟେ ପଶନ୍ତି ଧସାଇ ॥

ସକାଳ ପହରୁ ବେଳ ବାର ଘଡ଼ିଯାଏ ।
ବେଢ଼ାରେ ଏପରି ସଂକଳପ ଲାଗିଥାଏ ॥

ସେଦିନ ସକାଳ ଧୂପେ ଭୋଗ ପର୍ବପିଠା ।
ତାପରେ ଷଟଣି ବନ୍ଦାପନା ହୁଏ ନିଷ୍ଠା ॥

ଉପବାସୀ ବନ୍ଦାପନା ଅକ୍ଷତ ପ୍ରସାଦ ।
କଣିକାଏ ପାଇ ଖାଇ ହୁଅନ୍ତି ଆହ୍ଲାଦ ॥

ନଡ଼ିଆ ପଇତା ଲାଗି ହୁଅନ୍ତି ଠାକୁର ।
ଭୋଗ ରାଗେ ହୋଇଥାଏ ପୂର ଭରପୂର ॥

ମାଳି ସୁଆରେ ତିଆରି ଷଟଣି ଭଙ୍ଗୁଡ଼ା ।
ବାଢ଼ନ୍ତି ବେଢ଼ାର ଚାରିଆଡ଼େ ଖଇଚୂଡ଼ା ॥

ତା ସଙ୍ଗେ ଦହି ଘୋରସ ଚିନି ଛେନା ପଣା ।
ରତୁ ଯାତ ଫଳମୂଳ କରନ୍ତି ଘଟଣା ॥

ଖଟଣି ଗୋଟିକେ ବଟୀ ଦେଇ ପଇସାଟି ।
ଅସୁଲ ଦେଇ ଟିକେଟ ଆଣୁଥାନ୍ତି କାଟି ॥

ଖଟଣୀ ପୂଜା ସରିବା ପାଖରେ ଆଦେଶ ।
ଭୋଗ ନେବା ଲାଗି ଭିଡ଼ ପଡ଼ଇ ବିଶେଷ ॥

ଗ୍ରାମ ନିକଟେ ପ୍ରସାଦ ନେଇଯାନ୍ତି ଥୋକେ ।
ବେଢ଼ାରେ ସେବା କରନ୍ତି ଅଧିକାଂଶ ଲୋକେ ॥

ତଦନ୍ତେ ସିଂହ ଦୁଆରେ ବଜାର ସଉଦା ।
କିଣି ଯାତ୍ରୀଏ ଯାଆନ୍ତି ହୋଇ ଜୁଦା ଜୁଦା ॥

ତହୁଁ ଠାକୁରଙ୍କ ନୀତି କର୍ମମାନ ବଢ଼େ ।
ସେଦିନ ବେଳ ବିଳମ୍ବେ ସବୁ କାମ ପଡ଼େ ॥

ଶ୍ରୀ ଲତୁ ବାବାଙ୍କୁ ମନେ ଭାବି ଅବିରତ ।
ସରିଲା ପ୍ରଥମାଷ୍ଟମୀ ଯାତ୍ରା ଆଦ୍ୟବ୍ରତ ॥

## ଓଢ଼ଣ ଷଷ୍ଠୀ

ମାର୍ଗଶିର ଶୁକ୍ଳ ଷଷ୍ଠୀ ପ୍ରାବରଣ ଯାତ ।
ବାବାଙ୍କ ଦ୍ୱିତୀୟ ବ୍ରତ ଉପବାସ ଖ୍ୟାତ ॥

ଏ ଯାତ୍ରା ହୁଏ ପ୍ରଥମାଷ୍ଟମୀର ପ୍ରକାରେ ।
ସକଳ ଭିନ୍ନ ସକାଳ ଧୂପର ଉତ୍ତାରେ ॥

ଦେଇଥାଏ ଖଣ୍ଡାଦାର ବେଲ୍ଲହାଁ ମସିଣା ।
ବିଭୁଙ୍କପାଇଁ ସେବକେ କରନ୍ତି ବିଛଣା ॥

ପାଟ କନାରେ ତିଆରି ଲିଙ୍ଗ ଆଭରଣେ ।
ଘୋଡ଼ା ଲାଗି ହୁଅନ୍ତି ତା ଶୀତ ନିବାରଣେ ॥

ସର୍ବ ଦେବେ ହୁଅନ୍ତି ଏ ଦିନ ଘୋଡ଼ଲାଗି ।
ଶାସ୍ତ୍ର ମତେ ଭବିଷ୍ୟତେ ଶୀତକାଳ ଲାଗି ॥

ତାପରେ ଖଟଣି ଧୂପ ବନ୍ଦାପନା ସରେ ।
ବ୍ରତୀ ପ୍ରସାଦ ସେବନ୍ତି ଅଢ଼େଇ ପ୍ରହରେ ॥

ପ୍ରାବରଣ ଷଷ୍ଠୀ ଯାତ୍ରା ବିଧି ସମାପତି ।
ଶ୍ରୀଲିଙ୍ଗରାଜ ଚରଣ ଯୁଗେ ଦେଇ ମତି ॥

## ପୁଷ୍ୟାଭିଷେକ

ପୁଷ୍ୟା ନକ୍ଷତ୍ର ଯୁକତ ସେ ପୁଷ୍ୟାଭିଷେକ ।
ପୌଷ ପୂର୍ଣ୍ଣିମାରେ ପଡ଼େ ଦେବ ଯାତ୍ରା ଏକ ॥

କପାସୂତା କଟା ସୁନା ପଇତା ନଡ଼ିଆ ।
ଲାଗୁଅନ୍ତି ଲିଙ୍ଗ ମସ୍ତକେ ଆଣି ବ୍ରାହ୍ମଣିଆ ॥

ମଣ୍ଡାପିଠା ଯେ ଖଟଣି ବନ୍ଦାପନା ଧୂପ ।
ବିଗତ ବେନି ଯାତ୍ରାର ଭୋଗ ଅନୁରୂପ ॥

## ମକର ସଂକ୍ରାନ୍ତି

ପୌଷ ମାସ ଶେଷେ କିମ୍ବା ମାଘର ପ୍ରଥମେ ।
ମକର ସଂକ୍ରାନ୍ତି ଯାତ୍ରା ଶୀତ ଦିନେ ଗମେ ॥

ସୂର୍ଯ୍ୟଙ୍କ ଉତ୍ତରାୟଣ ଗତି ଆରମ୍ଭରେ ।
ସବୁ ଦେବତାଙ୍କ ପର୍ବ ହୁଏ ଆଡ଼ମ୍ବରେ ॥

ଏ ଦିନ ଖଟଣି ଯାତ୍ରୀ ଆସନ୍ତ ଯେତିକି ।
ମକର ଲୋଗେ ଆସନ୍ତି ଅଧିକା ସେତିକି ॥

ସକାଳ ଧୂପର ପର କରନ୍ତି ଯାତ୍ରାର ।
ସରିଲା ବେଳକୁ ଦେଖା ଯାଉ ଥାଇ ତାର ॥

ଗୁଣ୍ଡ ଗୁଣ୍ଡିଆ ତଣ୍ଡୁଳ କଦଳୀ ଶାକର ।
ଯଅ ଧାନ ଘିଅ ଆଖୁ ନଡ଼ିଆର କ୍ଷୀର ॥

ଅଦା ଲବଙ୍ଗ ମରିଚ ଅଳାଇଚ ଆଦି ।
ମସଲା ଭରି କରନ୍ତି ମକର ଉପାଧି ॥

ନୂତନ ହାଣ୍ଡି ପତୁଲି ଖୋଲିଆ ଅଂଟିକା ।
ଧାଡ଼ି ଧାଡ଼ି ବଢ଼ା ହୁଏ କେ କରିବ ଟୀକା ॥

ବେଢ଼ା ବାହାରକୁ ବାସୁଥାଏ ମହ ମହ ।
ନର ନାରୀ ଶିଶୁ ମୁଖ ରବ ଗହ ଗହ ॥

ତଳପାଖେ କନା ବାଡ଼ ବେଢ଼ ଓ ବେଢ଼ାରେ ।
ଛଡ଼ନ ଭୋଗ ମକର ବାଢ଼ନ୍ତି ବଢ଼ାରେ ॥

ନଡ଼ିଆ, କଦଳୀ ଟଗ ଲେମ୍ବୁଆ ନାରଙ୍ଗ ।
କରୁଣା କଇଁଠ ବେଲ ଓଉ ମାତୁଲଙ୍ଗ ॥
ମକା କରମଙ୍ଗା ଜମ୍ବୁ ଜମ୍ବିର ସପୁରି ।
କାକୁଡ଼ି ଆମ୍ବ ଡାଳିମ୍ବ ଚକୁଳି ବଦରି ॥
ଡାଲଚିନି ଅଳାଇଚ ଲବଙ୍ଗ ତାମ୍ବୁଳ ।
ମରିଚ ଜୀରକ ତେଜପତ୍ର ଜାଇଫଳ ॥
ଆଖୁ ଯବ ବୁଟ ମୁଗ ଗହମ କର୍ପୂର ।
ଦହି ମହୁ ଘିଅ ଛେନା ଲହୁଣୀ ଯେ କ୍ଷୀର ॥
କ୍ରମୁକ ନବାତ ଗୁଡ଼ ଗୁଭଳ ମିଶିରି ।
ବିରହୀ ଜହ୍ନା ଖଇ ମୁଢ଼ି ପାଳୁଅର କ୍ଷୀରୀ ॥
ଫେଣା ଶାକର ଉଖୁଡ଼ା ଚୂଡ଼ା ବେଣ୍ଡ ଲିଆ ।
ମକର ଛପନ ଭୋଗ ଦେବେ ହୁଏ ଦିଆ ॥
ଏହି ଜିନିଷରେ କରି ବିବିଧ ପ୍ରକାରେ ।
ଠାକୁର ପାଖେ ନିଅନ୍ତି ସେବକ ଠିକାରେ ॥
ଡାଲାରେ ଭରି ଉପରେ ପାଟକୁ ଘୋଡ଼ାଇ ।
ଟେକି ଛତି ତ୍ରାସ ଘଣ୍ଟ କାହାଳ ବଜାଇ ॥
ତ୍ରିବାର ମକର ବେଢ଼ା ବୁଲାଇଣ ଠୁଳେ ।
ରଖନ୍ତି ଉପାଧି ମାନ ସେ ବଡ଼ ଦେଉଳେ ॥
ବଢ଼େ ଖଟଣି ମକର ଧୂପ ବନ୍ଦାପନା ।
ବ୍ରତୀ ଏ ପାଇ ପ୍ରସାଦ ଆନନ୍ଦିତ ମନା ॥
ଲଗେ ବେଢ଼ାରେ ଖଟଣି ମକର ଭୋଜନ ।
ଘୁ, ଘୁ, ଶୁଭୁଥାଏ ମିଳିବାକୁ ବହୁ ଜନ ॥
ସଞ୍ଜ ବେଳକୁ ମକର ଯାତ୍ରା ଭୋଗ ସରେ ।
ସାଙ୍ଗ ସାଥିରେ ଯାଆନ୍ତି ଯାତ୍ରୀ ଯେଝା ଘରେ ॥
ବ୍ରତୀଙ୍କ ମନସାମନା ବାବା ! କର ସିଦ୍ଧି ।
ସରିଲା ମକର ସଂକ୍ରମଣ ଯାତ୍ରା ବିଧି ॥

## ମାଘ (ଚନ୍ଦ୍ରଭାଗା ସପ୍ତମୀ)

ଶୁକ୍ଳ ପକ୍ଷ ସପ୍ତମୀ ତିଥି ମାଘ ମାସେ ।
ଚନ୍ଦ୍ରଭାଗା ସପତମୀ ନାମେ ଯାତ୍ରା ଆସେ ॥
ସକାଳ ଧୂପ ଉଠାରୁ ଯାତରେ ବଢ଼ଇ ।
ଅଢ଼େଇ ପହର ପରେ ସକଳ ଛିଡ଼ଇ ॥
ସୂର୍ଯ୍ୟ ଦେବ ଉଦଭବ ଚନ୍ଦ୍ରଭାଗା ତୀର୍ଥେ ।
ପ୍ରବାଦ ଥିବାରୁ ଯାତ୍ରା ସର୍ବ ଦେବ କ୍ଷେତ୍ରେ ॥
ପୂର୍ବେ ସୁମନ୍ୟୁ ମହର୍ଷି ଚନ୍ଦ୍ରଭାଗା ସୁତା ।
ସାଗରର ଅପସର ଗରଭୁଁ ସମ୍ଭୂତା ॥
ଲଭଲୀ ବୟସୀ ବାଳା କନ୍ଦୁକ ଖେଳାରେ ।
ରତ ଅପରାହ୍ନେ ସିନ୍ଧୁ ଉପର ବେଳାରେ ॥
ରମାମଣି ରୂପ ଠାଣି ସୂର୍ଯ୍ୟ ନେତ୍ରେ ଦେଖି ।
କନ୍ଦରପ ପଞ୍ଚଶରେ ହୋଇଲେ ଦୁଦେଖି ॥
ଅସ୍ତାଚଳୁଁ ଓହ୍ଲାଇଣ ଗଲେ ବାମା ପାଶେ ।
ଦେଖି ଅପସର ସୁତା ପଳାଇଲା ତ୍ରାସେ ॥
ଦୌଡ଼ିବାରେ ଉଡ଼ିଯାଏ ବସନ ଅଞ୍ଚଳ ।
ଗୋଡ଼ାଇଛନ୍ତି ତପନ ଧରିବେ ଚଞ୍ଚଳ ॥
ସୁବର୍ଣ୍ଣ ନିଷାଣେ ବନ୍ଧା ଶୋଣିତ ଚିକଳ ।
ଦଉଡ଼ିବାରେ ଉଡ଼ଇ ଗାଢ଼େ ଅନ୍ତରଚ ॥
ଜାଣି ନାହିଁ ବାଳାମଣି ପୁରୁଷର ପ୍ରୀତି ।
ପ୍ରାଣ ବିକଳେ ପଳାଉଅଛି କରି ଭୀତି ॥
ପଶିଗଲା ଯୋଷାବର ସାଗର ଗରଭେ ।
ମିଶିଗଲେ ଦିନମଣି ତା ସଙ୍ଗେ ହାରବେ ॥
ରତିଯାକ ଖୋଜି ଖୋଜି ହୋଇଲେ ହାଲିଆ ।
ନପାଇ ଫେରିଲେ ଦୁଃଖେ ଶ୍ରୀଅଙ୍ଗ ନାଲିଆ ॥
କଅଁଳା ବାଛୁରୀ ପରି ସମୁଦ୍ରରୁ ଡେଇଁ ।
ଗଗନେ ଉଦିତ ହେଲେ ଜଗତ ଗୋସାଇଁ ॥
ସେହି ଦିନ ହୋଇଥିଲା ମକର ସପ୍ତମୀ ।
ଯାତ୍ରା କିଆଇଲେ ଦେବେ ଚନ୍ଦ୍ରଭାଗା ନାମୀ ॥
ପୂର୍ବେ ଏହି ସ୍ଥାନ ନାମ ମଇତ୍ରେୟ ବନ ।
ଏଥି କୋଣାର୍କ ମନ୍ଦିର ଦିବ୍ୟ ସୁଶୋଭନ ॥

ପ୍ରତି ବର୍ଷ ବହୁ ଯାତ୍ରୀ ଏ ଦିନ ପୂର୍ବରୁ ।
ବୁଡ଼ ପାରି ରହିଥାନ୍ତି ସମୁଦ୍ର ଗର୍ଭରୁ ॥

ବିଚିତ୍ର ରୂପରେ ରବି ଦିଅନ୍ତେ ଆକାଶେ ।
ଯେ ଯାହା ପୁରେ ଫେରନ୍ତି ଅରୁଣ ପ୍ରକାଶେ ॥

ଏହି ଉତ୍ସବ ପାଳନ ନିମନ୍ତେ ଯାତରା ।
ହେଉଅଛି ବାବାଙ୍କର ବର୍ଷ ପରମ୍ପରା ॥

ଏ ଦିନ ସନ୍ତେ ଠାକୁର ଘେନି ନିଯୋଗିଆ ।
ରାନ୍ଧି ଧୂପ ସାରି ବୁଲି ଯାନ୍ତି ବାଉଁଶିଆ ॥

ତହିଁ କୋଠ ଭୋଗ ଦ୍ୱାର ପୂଜା ଆଦି ସାରି ।
ପୁଷ୍ପବ ଶାସନେ ଭୁଞ୍ଜ ଫେରନ୍ତି ପୁରୀରି ॥

ଲାଗିପାଏ ସନ୍ତ ଧୂପ ଠାରୁ ଦେବ ନୀତି ।
ଏ ରୂପେ ମାଘ ସପ୍ତମୀ ଯାତ୍ରା ସମାପତି ॥

## ଶିବ ରାତ୍ରି

ଫାଲଗୁନ ମାସ କୃଷ୍ଣ ପକ୍ଷ ଚତୁର୍ଦ୍ଦଶୀ ।
ଶଙ୍କର ଜୟନ୍ତୀ ଶିବରାତ୍ରି ଅର୍ଦ୍ଧନିଶୀ ॥

ଶୀତଋତୁ ଚିତ୍ତଋତୁ କୁମ୍ଭ ରାଶି ଗତ ।
ହିନ୍ଦୁ ସନାତନ ଧର୍ମୀ ଆଚରନ୍ତି ବ୍ରତ ॥

ସେହି ମହାପାପୀ ଏହି ବ୍ରତ ଯେ ନକରେ ।
ଜୀବିତେ ହିତାପୀ ଅନ୍ତେ ପଡ଼େ ନରକରେ ॥

ସକଳ ଲୋକ ବୋଲନ୍ତି ଜାଗର ଯାତରା ।
ବସନ୍ତ ଆଗତ ନ ବାଧଇ ଶୀତ ଖରା ॥

ଯାତ୍ରା ହୁଏ ଆରମ୍ଭରୁ ଶେଷ ଯାଏଁ ମାସେ ।
କୋଶେ ପରିମାଣେ ପୂରିଥାଇ ଚଉପାଶେ ॥

ଦୂର ବରତୀରୁ ଯାନ ବାହନରେ ଭରି ।
ଆସନ୍ତି ଦୋକାନୀମାନେ ନିଜ ଚିଜ ଧରି ॥

ଯାତରା ପଦାରେ ଘର ଦୁଆର ତିଆରି ।
ପସରା ମେଲି ବିକନ୍ତି ଦ୍ରବ୍ୟ ଦଳିଆରି ॥

ଜେଣେ ସୁନ୍ଦର ଦିଶଇ ସେ ଦୋକାନମାନ ।
ଅଳକାପୁର କୁବେର ଭଣ୍ଡାର ସମାନ ॥

ଦିବା ରାତ୍ର ଚଳାଚଳ ଲୋକଙ୍କ ବହନ ।
ବହୁତ ଦୂରୁଁ ଶୁଭଇ ଗହଳ ଚହଳ ॥

ଦକ୍ଷିଣ ଶରଣକୁଳୁଁ ଉତ୍ତରକୁ ଯିବ ।
ସଡ଼କ ଦିପାଖେ କେତେ ପସରା ଦେଖିବ ॥

କେଉଁଠାରେ ନାଲି ନେଳି କଳା ଧଳା ପାଟ ।
ସବୁଜ ନାରଙ୍ଗୀ ରଙ୍ଗେ ଛିଟ ଲୁଗା ହାଟ ॥

ଧୋତି ଚଦର ଗାମୁଛା ତରଭିଆ ଶାଢ଼ୀ ।
ପେଣ୍ଟ ସାଟ୍ କାମିଜ୍ କୋଟ ଗେଞ୍ଜୀ ଧାଡ଼ି ଧାଡ଼ି ॥

ଟୋପି ମଫଲର ବ୍ୟାଗ କାଞ୍ଚଲ ରେଶମୀ ।
ମର୍ସରାଇଜ୍, ଇମିଟେସନ ଶିଲକ ପଶମୀ ॥

ଅରଖି ମଠା ମକୁଟା ଜରି ମୁହିଁ ଦିଆ ।
ପେଦା ପୁରୀ ମଣିପଡ଼ି କାଣ୍ଡିଆ କରିଆ ॥

କେଉଁଠି କଂସା ବାସନ ଥାଳୀ ବେଲ ଗିନା ।
ଥାଳିଆ ପରଶୁଣିଆ ବାଟି ବିକା କିଣା ॥

ପିତଳ ବାସନ ରତ୍ନ ଗରିଆ ତସଲ ।
ଡ଼ଳ ହଣ୍ଡା ଡଙ୍କି ଘଣ୍ଟ ପଲମ ଯେ ବେଲ ॥

ଗଞ୍ଜ ବଟା ଚଟୁ ଲ୍ୟାମ୍ପ୍ ଡବି ଖୁରି ଖଇ ।
ନ କିଣିବା ଲୋକେ ଚାହିଁଥାନ୍ତି ବଲ ବଲ ॥

ଟାଉ ଗିଲ୍‌ଟି ସିଲ୍‌ଭର କେତେ ପରକାର ।
ଜୋତା ଚପଲ କିଣନ୍ତି ଯାର ଦରକାର ॥

ମନୋହରୀ ଦୋକାନରେ ମାଳି ମୁଦି ଫୁଲି ।
ପାନିଆ ଦର୍ପଣ ସାବୁନ୍ ଅତର ଟିକିଲି ॥

ସିନ୍ଦୁର କଜଳ ଆଉ ବିଡ଼ି ସିଗାରେଟ୍ ।
କଳା କୋଳ ଗୁଡ଼ାଖୁ ବିସ୍କୁଟ ଚିଁ ରେଟ ॥

ଲୁହାର ବଜାର କାହିଁ ଶିକୁଳୀ କଟୁରୀ ।
ଢାଲି ଚଟୁ ମାଠ ଚଟୁ କୁରାଢ଼ୀ କଟୁରୀ ॥

ଟାଙ୍ଗିଆ କରତ ଛୁରି ନିହଣ ପୁଆରୀ ।
ଯନ୍ତାନାଳ ଶୁନବଳା ବନ୍ଧୁକ ପଦାରି ॥
ଖରଡ଼ା ବନ୍ଧୁ ଗୁଳ୍ପଲ କରେଇ ଚଢ଼ଆ ।
ଲଡ଼ାଛଡ଼ ଶବଳ ଯେ ପିଠାର ପାଟିଆ ॥
ଖଡ଼ଗ ଛୁରୀ କଟାରୀ କାଟି ଯେ ଚାରସୀ ।
ନହୁରୁଣି ସ୍କୁ ଗୁଆକାଟି ଯେ ଫାରସି ॥
ଗୁଡ଼ିଆ ପସରମାନ ବସେ ଧାଡ଼ି ଧାଡ଼ି ।
ବିକା ହେଉଥାଏ ଖଜା ପିଠାମାନ ଗାଡ଼ି ଗାଡ଼ି ॥
ପୁରି ଲୁଚି ମାଲପୁଆ କାକେର ଆରିସା ।
ଉପମା ମୋହନ ଭୋଗ ପେଡ଼ାକି ସରିସା ॥
ମୁଆଁ ମିଠେଇ ଉଖୁଡ଼ା ଖଇ ରସଗୋଲ୍ଲ ।
ଖଣ୍ଡ ସାକର ମଗଜି ଲଡ଼ୁ ଭୁଜା ସୋଲ୍ଲ ॥
ପାନ ବୋକାନିଏ କେତେ ମସଲ୍ଲ ମିଶାଇ ।
ପଇସାକୁ ଖିଲେ ଦ୍ୟନ୍ତି ଗରଖ ରସାଇ ॥
ଡାଲି ସ୍ବଉଳ ସୋରିଷ ମସଲ୍ଲ ଆସ୍ବର ।
ଗୁଡ଼ ଲୁଣ ଲଙ୍କା ଖଲି ନିତି କାରବାର ॥
କାଗଜର ବହି ଖାତା କେତେ ଭଳି ରୂପ ।
ଆଶ୍ଚର୍ଯ୍ୟେ କିଣିବ ଦେଖି ନିଶ୍ଚେ ହେଲେ ଭୂପ ॥
କାକଂଡ଼ କଇର ଆଳୁ କଦଳୀ କଖାରୁ ।
ଟମାଟୋ କାକୁଡ଼ି ମୂଳା ବାଇଗଣ ସାରୁ ॥
ଲଙ୍କି ଭେଣ୍ଡି କୋବି ସାଲଗମ ମକା ଯେ ପିଠୋଳ ।
ପିଆଜ ରସୁଣ ଭଲି ଗାଜର ପୋଟଳ ॥
କରବା ଗାଜର ସିମ୍ବ ଆମ୍ବ କନ୍ଦମୂଳ ।
ଶାଗ ସବଜି ଜିନିଷ ଦୋକାନ ମଞ୍ଜୁଳ ॥
କାଠ ମାଟିର କଣ୍ଢେଇ କନ୍ଥକେ ଗଣିବ ।
ସଜୀବ ପରି ଦିଶନ୍ତି କେହୁ ନଜିଣିବ ॥
ବିକନ୍ତି ଜନ୍ତାରି ଅଖୁ ଧଣ୍ଡା ଅଗଣନା ।
ଗଉଡ଼ ଡାକଇ ନିଅ ଦହି ଦୁଧ ଛେନା ॥

ଭାତ ଡାଲି ତରକାରୀ ହୋଟେଲରେ ଲୋକେ ।
ପଇସା ଦେଇ ଖାଆନ୍ତି ଥୋକେ ଗଲେ ଥୋକେ ॥
କାହିଁ ନାଟୁଆ ପୋଷାକ ବସିଛି ବଜାର ।
ବିକା କିଣା କରୁଛନ୍ତି ବସି ବଣିକାର ॥
କପି ଗହ୍ମ ଚୋଡ଼ା ଆଦି ଖାଆନ୍ତି ବାଟୁଆ ।
କେ କିଣେ ମହଣ ଛତା ଖିସା ଯେ ବଟୁଆ ॥
ଯାତରା ପଦାରେ କେତେ ନାଗର ନାଗରୀ ।
ଗୁପତେ କରନ୍ତି ଦେଖି ଆଖି ଠଗଠରି ॥
ଲୋକ ଭିଡ଼େ ହୋଇଯାନ୍ତି ଦେହେ ଲଗାଲଗି ।
ମୁଖେ ମୁଖ ଘଷାଘଷି ସାଙ୍ଗ ସାଥି ଜଗି ॥
କେଉଁ ରସିକ ରସିକା ସ୍ତନ ଘେନୁ ହସ୍ତେ ।
ଛଡ଼ାଇ ଦିଏ ସେ ଲୋକ ଦେଖି ଭୀତି ଗ୍ରସ୍ତେ ॥
କେଉଁ ନାରୀ କର ଟେକି ନାସିକା ଫୁଲାଇ ।
ମୁଦ୍ରିକି ହଦାଟି ଦେଇ ସ୍ବଲଇ ଫେଲଇ ॥
କେ ଲୁଗା କର୍ଦ୍ଧି ଦେଖାଏ ଦେହ ଅଳଙ୍କାର ।
ଅଙ୍ଗ ମୋଡ଼ି ହାଇମାରି ପଡ଼େକା ଉପର ॥
କେଉଁ ପୁରୁଷ ସ୍ତିରୀକି ଦେଉଥାନ୍ତି ଠେଲି ।
ଲୋକ ମାଡ଼ି ପଡ଼ୁଛନ୍ତି ବୋଲି କରି ବେଲି ॥
କେହୁ ସଂକେତ ସଜକୁ ଚଳନ୍ତି ଉରଷି ।
ଲେଉଟି ଆସନ୍ତି ଲୋକ ଦେଖି ଲାଜେ ଖସି ॥
ଏହିପରି ନର ନାରୀ ମଦନ ମାଦକେ ।
କ୍ଷଣକ ବିଳାସ କରୁଥାନ୍ତି ଦଳ ଦଳେ ॥
ଏମନ୍ତେ ଯେତେ ଘଟଣା କେ ବର୍ଣ୍ଣି ପାରିବ ।
ମାନବ ମାତ୍ରେ ଜୀବନେ କାହିଁ ତା ସାରିବ ॥
କାହିଁ ଟକି ସିନେମାରେ କେତେ ଚଳଚ୍ଚିତ୍ର ।
ନୃତ୍ୟ କରି ଗୀତ ଗାଉଛନ୍ତି କି ବିଚିତ୍ର ॥
ନଦୀ ସମୁଦ୍ର ମନ୍ଦିର କେତେ ଗିରି ବଣ ।
ବିହରନ୍ତି ସରୀସୃପ ପଶୁ ପକ୍ଷୀ ଗଣ ॥

କାହିଁ ବାୟସୋପ ଯନ୍ତ୍ର କି ବୃହତ ଛବି ।
ଦେଖିଲେ ବର୍ଣ୍ଣନା କରି ନପାରିବେ କବି ॥

କାହିଁ ବଡ଼ଛତା ତଳେ ଲୋକ କାଠ ଘୋଡ଼ା ।
ବୁଲୁଛି ବେପାରୀ ଚଢ଼ାଇଣ ଚୌକି ଯୋଡ଼ା ॥

କାହିଁ ମ୍ୟାଜିକ ଦେଖାନ୍ତି ଦୋମୁଣ୍ଡିଆ ଲୋକ ।
ଆଶ୍ଚର୍ଯ୍ୟ ଜୀବିତେ ହଣା ହାତ ଗୋଡ଼ ବେକ ॥

ମଣିପି ମାଇପି ପିଲା କାହିଁ ସରକସ ।
ବନ୍ଧ ଗଣ୍ଡି କେତେ କ୍ରୀଡ଼ା ଦେଖାନ୍ତି ସରସ ॥

ବାଘ ସିଂହ ଭାଲୁ ଘୋଡ଼ା ଓଟ ଗଧ ଛେଳି ।
କପି କୁକୁର କ୍ରୀଡ଼ନ୍ତି ହୋଇ ଏକ ମେଳି ॥

କାହିଁ କଣେଇ ନାଚନ୍ତି ଶ୍ରୀରାମ ଚରିତ ।
ସୂଚନା ଦିଅନ୍ତି ଗୋଟି ଗୋଟିଏ କରିତ ॥

ବଜାଇ ଲୁହା କଂକଣେ ଛୁରୀ କରିବନ୍ତି ।
ବଜାରେ ମାଗନ୍ତି ଭିଖ ହାତ କଟା ଛାତି ॥

କାହିଁ ନାଗେଶ୍ୱର ମୁଖେ ବଜାଇଣ ବେଲା ।
ଦେଖାଉଛି ଭୟଙ୍କର କେତେ ସାପ ଖେଳା ॥

କାହିଁ ନାଟକ ସଙ୍ଗୀତ ରାମକୃଷ୍ଣ ଲୀଳା ।
ଦ୍ୱାରୀ ନାଟ ଝାମୁଯାତେ ନାଚୁଛନ୍ତି ପିଲା ॥

କଉତୁକ ଚିନ୍ତାମଣି ବିଦ୍ୟାକି ସୁନ୍ଦର ।
ଭଦ୍ର ଜାଇ ଲୋକ ବାଜୀ ଦେଖାନ୍ତି ସୁନ୍ଦର ॥

ଘରେଇ ବାବାଜି କାହିଁ ଖଂଜଣି ବଜାଇ ।
ବୋକାନେ ମାଗନ୍ତି ଭିକ୍ଷା ଲୋକଙ୍କୁ ରଞ୍ଜାଇ ॥

କାହିଁ ବଇଷ୍ଣବ ଶୋଇଅଛନ୍ତି କଣ୍ଟାରେ ।
ରଡ଼ନିଆଁ ଭଳେଇ କି ଥୋଇଣ ଅଣ୍ଟାରେ ॥

ହାଡ଼ିଏ ବଜାନ୍ତି ବାଜା ଦଉଡ଼ି ଦଉଡ଼ି ।
ଯୋଗୀ ଭେଖୀ ଭିକାରିଏ ମାଗନ୍ତି କଉଡ଼ି ॥

ବେଢ଼ାର ବାହାରେ ଘଟିଥାଏ ଏହିପରି ।
ଏଥର ଭିତର କଥା ଶୁଣ ହେତୁକରି ॥

ଏ ଦିନ ସକାଳ ଧୂପ ପହରୁ ବଢ଼ଇ ।
ଦିପହର ଧୂପ ଭିନ୍ନ ସଜ୍ଜ ଛିଡ଼ାଇ ॥

ଆସନ୍ତି ଅସଂଖ୍ୟ ଯାତ୍ରୀ ଦରଶନ କରି ।
ବାଳକ ବାଳିକା ବୃଦ୍ଧ ଯୁବା ନରନାରୀ ॥

ଯଜମାନ ମାନ ଘେନି ପଣ୍ଡା ମାଳୀଗଣ ।
କରନ୍ତି ସଧାରେ ବିଧିମତ ଦରଶନ ॥

ପଡ଼ିଯାଏ ଦେଉଳରେ ଲୋକ ବଡ଼ ଭିଡ଼ ।
ବାରଣା ବନ୍ଧା ନଇର ଭଙ୍ଗେ ଯେହ୍ନ ହିଡ଼ ॥

ଘୋର ମୁଖରବେ କାନ ପଡଇ ଅଟଡ଼ା ।
ପେଲି ପଶିବାକୁ ପାଦ ନଉଠଇ ଭଡ଼ା ॥

ଦକ୍ଷିଣ ପରବ ଦ୍ୱାରେ ଥାଆନ୍ତି ଦୁଆରୀ ।
ବାଡ଼ି ଦେଖାଇ ଦିଅନ୍ତି ଛାଡ଼ି ନରନାରୀ ॥

ନଡ଼ିଆ କନ୍ଦ ସପୁରୀ କମଳା ନାରଙ୍ଗ ।
ଟଭା କଦଳୀ ଠାକୁରେ କରୁଥାନ୍ତି ଭୋଗ ॥

ତୁଳସୀ ମାଳିକା ଫୁଲ ବେଲ ପତ୍ର ହାର ।
କେତେକ ସେବକ କରୁଥାନ୍ତି କାରବାର ॥

ଯାତ୍ରୀ ମାନେ ସେବାସୀଙ୍କି ଦିଅନ୍ତି ଦକ୍ଷିଣା ।
ସେବକେ ଯାତ୍ରୀ ଦର୍ଶନ ଶେଷ ଯାଏ କିଣା ॥

ବାବାଙ୍କୁ ଦର୍ଶନ କରି ଦେବ ଜଗନ୍ନାଥ ।
ପାର୍ବତୀ ମନ୍ଦିରେ ଯାତ୍ରୀ ହୁଅନ୍ତି ଆଗତ ॥

ଯାତ୍ରୀ କୁଟୁମ୍ବଙ୍କ ନାମ କହି ଗୋଟି ଗୋଟି ।
ଫୁଲ ପତ୍ର ଦ୍ୟନ୍ତି ଦେବେ ସେବାସୀଏ ଭେଟି ॥

ଦେଖନ୍ତି ପାର୍ଶ୍ୱ ଦେବତା ଛବିଳ ଦେଉଳ ।
ବାୟବ୍ୟ କୋଣରେ ବାମି ଜଳ ସୁବିମଳ ॥

ଭୋଗ ଘରେ ହୋଇଥାଇ କେତେ ପିଠା ଖଜା ।
ଯାର ଦରକାର ଯେତେ କରୁଥାନ୍ତି ପୂଜା ॥

ଟେମ୍ପଲରେ ଦେବୋତ୍ତର କର୍ମଚାରୀ ଗଣ ।
ଘଣ୍ଟ ଘଣ୍ଟି ଝରି ଆଦି ବସନ ଭୂଷଣ ॥

ଯାତ୍ରୀଦଳ ଜିନିଷର କରନ୍ତି ତାଲିକା ।
ଲଗିଥାଏ ଦିନ ରାତି ଏମନ୍ତ ମାଳିକା ॥

ଦିବା ଗତ ହେଲେ ସନ୍ଧ୍ୟା କାଳ ଉପଗତ ।
କିଣନ୍ତି ବଜାରୁ ଯାତ୍ରୀ ବତୀ ଦୀପ ଘୃତ ॥

ଲଗାନ୍ତି କାଗଜ ଦୀପ ଦେଇ ହୁଳ ହୁଳି ।
ହରିବୋଲ ହୁରି ବେଢ଼ା ପଡ଼ଇ ଉଛୁଳି ॥

ଠାକୁର ଗମ୍ଭୀର ମଧ୍ୟେ ଶତ ଅଷ୍ଟୋତ୍ତର ।
ଘୃତଦୀପ ଜଳା ଯାଏ ସରକାରଙ୍କର ॥

ଦେଉଳ ଉପରେ ଜଳୁଥାଇ ଦୀପାବଳୀ ।
ଏତେସେତେ ବୋଲି କେହୁ ପାରିବ କେ କଳି ॥

ସବୁ ମନ୍ଦିର ବେଢ଼ାରେ ଭିତରେ ବାହାରେ ।
ଜଳୁଥାଇ ଦୀପମାଳା କେତେକ ସହାରେ ॥

ପୋଖରୀ ପାହାଚ ମାନଙ୍କରେ ଦୀପାବଳୀ ।
ଜଳଇ ଅତି ମଞ୍ଜୁଳ ସବୁଠାରୁ ବଳି ॥

ହୁଅନ୍ତି ପ୍ରତିବିମ୍ବିତ ଜଳ ତରଙ୍ଗରେ ।
ହଲି ଦୋହଲି ଦିଶଇ ବିବିଧ ରଙ୍ଗରେ ॥

ଲାଇଟି ଆଲୁଅ ଚନ୍ଦ୍ରଦୀପ ପରକାର ।
ଠାବେ ଠାବେ ଜଳୁଥାଇ ଅତି ଚମତ୍କାର ॥

ସଚିତ୍ର ମନ୍ଦିର ବେଢ଼ା ଦୀପ ମାଳା ଜଳେ ।
ପ୍ରତିବିମ୍ବିତ ହୁଅଇ ଜଳାରଣ୍ୟଜଳେ ॥

ମନେ ହୁଏ ବାରି ମଧ୍ୟେ ବରୁଣ ଦେବତା ।
ଶିବରାତ୍ରି ଉତ୍ସବରେ ହୋଇଛନ୍ତି ମତ୍ତା ॥

ଜାଳି ଦୀପାବଳୀ ସଙ୍ଗେ ଘେନି ରାଜ୍ୟପ୍ରଜା ।
ହରଙ୍କ ଗୃହରେ ଆଜି କରୁଛନ୍ତି ମଜା ॥

ସ୍ୱାଭାବିକ ଶତ୍ରୁ ଜଳ ଅନଳର ଗୋଳ ।
ମାତ୍ର ମିତ୍ର ଭଳି ଆଜି କରୁଛନ୍ତି କୋଳ ॥

ଗ୍ରାମ ବାହାରେ ବଜାରେ ସନ୍ଧିରେ କନ୍ଧିରେ ।
ଜଳେ ଦୀପ ବାଟେ ଘାଟେ ସକଳ ମନ୍ଦିରେ ॥

ଢାକବାଜି ଯନ୍ତ୍ରେ ବେଦ ମନ୍ତ୍ର ଗୀତ ଧ୍ୱନୀ ।
ବାଦ୍ୟ ନାଦେ କମ୍ପୁଥାଇ ପୁଲକେ ଅବନୀ ॥

ସନ୍ଧ୍ୟାପରେ ଯାତ୍ରୀ ଦରଶନ ବନ୍ଦ ହୁଏ ।
ଠାକୁରଙ୍କ ନୀତି ସଞ୍ଜ ଧୂପ ଯାଏଁ ଯାଏ ॥

ରାତ୍ରି ଅର୍ଦ୍ଧ ସମୟକୁ ବେଢ଼ା ପରିକ୍ରମା ।
ମନ୍ଦିରେ ସେବକ ସର୍ବେ ହୋଇଥାନ୍ତି ଜମା ॥

ରସାର ସାର ପ୍ରତିମା ଶ୍ରୀଚନ୍ଦ୍ରଶେଖର ।
ବସାଇ ବେଶ କରନ୍ତି ପଲ୍ୟଙ୍କ ଉପର ॥

କେତକୀ ପାଖୁଡ଼ା ଲାଗି ଲିଙ୍ଗେ ପ୍ରତିମାରେ ।
କରନ୍ତି ସେବାଶ୍ରୀ ବରଷକେ ଏକବାରେ ॥

ବେଢ଼ା ମଧ୍ୟେ ଚଉଦଳ ଅପୂର୍ବ ମଣ୍ଡଣି ।
ଦିଶୁଥାଇ ଝଲମଲ ଝାଲର ଛନ୍ଦଣି ॥

ଆଡ଼େଣି ଆଲଟ ଛତି ତ୍ରାସ ମୁଠାବାନା ।
ଧରନ୍ତି ସେବକେ ରଙ୍ଗ ଉପସ୍କର ନାନା ॥

ଶଂଖ ମାଦଳ କାହାଳୀ ଘଣ୍ଟ ତାଳ ଖୋଳ ।
ବାଜିବାରେ ଶୁଭୁଥାଇ କେଡ଼େ କୋଳାହଳ ॥

ଠାକୁରେ ପ୍ରଥମେ ବିଜେ ଦକ୍ଷିଣ ଦୁଆରେ ।
ବନ୍ଦାନ୍ତି ଆଳତି ପଣ୍ଡା ଦିଅନ୍ତେ ସୁଆରେ ॥

ନରନାରୀ ହରିବୋଲ ହୁଳହୁଳି ହୁରି ।
ପଡ଼ୁଥାଏ ଚାରିଆଡ଼େ ବେଢ଼ା ଘୁରି ଘୁରି ॥

ଏକବାର ପ୍ରଦକ୍ଷିଣେ ବିଜେ ଚଉଦୋଳେ ।
ଆଗରେ ଗଣିକା ନାଚ କରନ୍ତି ସହଳେ ॥

ବଡ ଦେଉଳରେ ମାଳି ମହାଦୀପ ଜାଳେ ।
ରଜାଙ୍କ ନାମରେ ହକ ଦିଅଇ ଏକାଳେ ॥

ବେଢ଼ା ବୁଲ ବେଳେ କେତେ ଅନୁସରଣିଆ ।
ମୁହଁମାଡ଼ି ପଡ଼ୁଥାନ୍ତି ହୋଇ ଗୁହାରିଆ ॥

ଅଳପ କାଳେ ପ୍ରାପତ ଠାକୁର ହୁକୁମ ।
ପଳାନ୍ତି ଚୋର୍ଜିଲ ପରି ଆକାଶ କୁସୁମ ॥

ଟେଙ୍ଗ ଚମ୍ପା ଚକ୍ର କୁର୍ମ ବାଣ ଟୋପ ବାଜି ।
ଛଟକେ କାନ ଅଟଡ଼ା ପଡ଼େ ଶବ୍ଦ ବାଜି ॥

ତିନି ବେଢ଼ା ବୁଲି ଦିଅଁ ଦେଉଳେ ପଶନ୍ତି ।
ମୁଖଶାଳାରେ ଚଉକି ଉପରେ ବସନ୍ତି ॥

ତଦନ୍ତେ ହୁଏ ଖଟଣୀ ଧୂପ ବନ୍ଦାପନା ।
ପ୍ରସାଦପାଇ ଭକତେ ଉଲ୍ଲୁକ ତନୁନା ॥

ଚାରି ପ୍ରହର ରାତିକି ଚାରି ଚାରିଥର ।
ପୁରୋଧା କରନ୍ତି ଅଭିଷେକ ଶମ୍ଭୁଶିରଃ ॥

ଶିବ ଜୟନ୍ତୀ ବିଧାନ ତତଃ ସମବତେ୍ ।
ପାହାନ୍ତି ବଡ଼ ସିଂହାର ପରେ ଦ୍ୱାର ପଡ଼େ ॥

ପ୍ରକୃତ ମଙ୍ଗଳମୟ ଅଟେ ଶିବରାତ୍ରି ।
ଉଜାଗରେ ଦୀପଜାଳି ବସିଥାନ୍ତି ଯାତ୍ରୀ ॥

ଶେଷ ହେଲା ବାବାଙ୍କର ଶିବରାତ୍ରି ଯାତ ।
ସବୁଠାରୁ ଶ୍ରେଷ୍ଠ ବୋଲି ଜଗତ ବିଖ୍ୟାତ ॥

କେବଳ ବିଭୁ କରୁଣା ହେବାରୁ କିଞ୍ଚିତ ।
ଶିବରାତ୍ରି ବ୍ରତ କଥା ହେଲା ସମାପତ ॥

## ଅଶୋକାଷ୍ଟମୀ

ମଧୁ ମାସ ଶୁକ୍ଳ ପକ୍ଷ ଅଶୋକା ଅଷ୍ଟମୀ ।
ବସନ୍ତ ଋତୁରେ ଆସେକି ମଧୁରେ ଭ୍ରମି ॥

ପ୍ରଥମାଷ୍ଟମୀ ଯାତରା ଆଦ୍ୟ ବରଷକେ ।
କରି ନପାରି ଥାଆନ୍ତି ଯେଉଁ ଉପାସକେ ॥

କରନ୍ତି ସେ ଆଜି ପୂର୍ବ ପରି ସଙ୍କଳପ ।
ବଉଳ ମୂଳ ଦେଉଳ ପୁରୋଧା ସମୀପ ॥

ପୂର୍ବେ ଅତି ଭକ୍ତି ବଳେ ଦନୁଜ ତ୍ରିପୁର ।
ଶିବଙ୍କ ସ୍ୱରୂପ ଧରି ଗଲା ସ୍ୱର୍ଗପୁର ॥

ଦେଖି ଇନ୍ଦ୍ରାଦି ଦେବତା କଲେ ନମସାର ।
ନାରଦ ଋଷି ବାରଣ କଲେ ମାରି ଠାର ॥

ଏହି ତ୍ରିପୁର ଦାନବ ନୁହେଁ ମହାଦେବ ।
ଅକାରଣେ ଅସୁରକୁ ପ୍ରଣିପାତ ହେବ ॥

ପ୍ରଣତି ଥାଉଁ ବସିବା ପାଇଁକି ଆସନ ।
ନ ଦେବାରୁ ତତକ୍ଷଣ କୋପରେ କମନ ॥

ବୋଲେ ମୁହିଁ ସଦାଶିବ ସାକ୍ଷାତ ଈଶ୍ୱର ।
କି ଗରବେ ମୋତେ ଅବ ମାନନାଟି କର ॥

କହନ୍ତି ନାରଦ ଯେବେ ତୁମ୍ଭେ ପଶୁପତି ।
ଅର୍ଦ୍ଧ ଅଙ୍ଗରେ ତୁମ୍ଭର କାହାଁନ୍ତି ପାର୍ବତୀ ॥

ଯାଅ ଯୁବତୀକି ବାମ ଅଙ୍ଗେ ଘେନି ଆସ ।
ତେବେ ଦେବ ଗଣେ ତୁମ୍ଭେ ପାଇବ ଆଶ୍ୱାସ ॥

ଶୁଣି କ୍ରୋଧେ ଉଭଟିଲା ଦୈତ୍ୟ ଧାତିକାରେ ।
ପହଞ୍ଚିଲା କଇଳାସେ ହର-ପୁର ଦ୍ୱାରେ ॥

ଜାଣି କିଳିଲେ କବାଟ ଗଣେଶ ସେ କ୍ଷଣି ।
ଅରଗଳି ମେଲି ଦେଲେ ତ୍ରିଜଗ ଜନନୀ ॥

ଆଣେ ଡ଼ାକି ଦୃଢ଼େ ପେଲି ଆୟୁଧେ ପିଟିଲା ।
ତଥାପି ଦୃଢ଼ କପାଟ ଟିକେ ନଫିଟିଲା ॥

ଚକ ହେଲେ ଲମ୍ବୋଦର କାର୍ତ୍ତିକ ପିଥରେ ।
ଏପରି ବର ଦେବାକି ଉଚିତ କୋୟରେ ॥

ତ୍ରିପୁରକୁ ବର ଦେଇ ଜିଣିବ ତ୍ରିପୁର ।
ତବ ରୂପ ଧରି ଦୈତ୍ୟ ଗଲା ସୁର ପୁର ॥

ଇନ୍ଦ୍ର ଆଦି ଦେବବୃନ୍ଦ ନକଲେ ପ୍ରଣତି ।
ଦେଖି ରେଷେ ପ୍ରଜ୍ୱଳିତ ଦୈତ୍ୟ ମନ୍ଦମତି ॥

ବୋଇଲେ ନାରଦ ବାମ ଅଙ୍ଗରେ ଗିରିଜା ।
ପୂଜା ପାଇବ ବସାଇ ଆସିଲେ ଛଟିଜା ॥

ଶିବାଙ୍କୁ ନେବାକୁ ଖଳ ଆସି ଅଛି ମାଗି ।
ଦ୍ୱାରେ ଡାକୁଅଛି କି ବିସ୍ୱର ଏଥି ଲାଗି ॥

ଶୁଣି ଶମ୍ଭୁ ସ୍ତମ୍ଭୀଭୂତେ ଚିନ୍ତିଲେ ଶ୍ରୀହରି ।
ତେତିଶ କୋଟି ଦେବତା ବିଧି ଆଦି କରି ॥

ହରପୁର ଅଙ୍ଗଣରେ ସର୍ବେ ହେଲେ ରୁଣ୍ଡ ।
ଶୂନ୍ୟେ ଅଦୃଶ୍ୟ ଓହ୍ଲାଇ ନଫିଟାଇ ତୁଣ୍ଡ ॥

ପୂର୍ବ ଚରିତ ମାନ ସମସ୍ତେ ଶୁଣିଲେ ।
କେହ୍ନେ ଅସୁର ମରିବ ମନରେ ଗୁଣିଲେ ॥

ବିରଞ୍ଚି ପାର୍ଶ୍ୱଲେ ଦେବେ ସର୍ବେ ହେଲେ ରଥେ ।
ଦେବ ଅସ୍ତ୍ର ଶସ୍ତ୍ର ଘେନି ବିଜେ ଦଶ ହସ୍ତେ ॥

ଅଶୋକ କଳିକା ଅଷ୍ଟ ଜଳେ ସଙ୍ଗେ ପାନ ।
କରି ଯୁଦ୍ଧେ ଅଗ୍ରସର ହୋଇଲେ ଈଶାନ ॥

ଫେଡ଼ିଲେ ବଜ୍ର କିଳନି ଫିଟିଲା କବାଟ ।
ବାହାରିଲେ ରୁଦ୍ରଗଣ ପାଇକରି ବାଟ ॥

ଦେଖି ମହାକ୍ରୁଦ୍ଧେ ଯୁଦ୍ଧେ ଦନୁଜ ବାହାର ।
ଲଗିଗଲା ବେନି ବଳେ ଆୟୁଧ ପ୍ରହାର ॥

ସେହି ଦିନୁ ଶିବାଳୟେ ଅଶୋକାଷ୍ଟମୀ ।
ନାମେ ଯାତ ହେଲା ଖ୍ୟାତ ଚୈତ୍ର ମାସେ ଗମି ॥

ହିନ୍ଦୁ ସନାତନ ଧର୍ମାବଲମ୍ବୀ ସକଳେ ।
ଅଶୋକ କଢ଼ୀ ଆଠଟି ଭରି ଜଳ ଚଳେ ॥

ଶୋକ ସନ୍ତାପ ନିପାତେ ଖେପନ୍ତି ଜଠରେ ।
ପ୍ରତି ବର୍ଷ ପଡ଼େ ପୁନର୍ବସୁ ନକ୍ଷତ୍ରରେ ॥

ସ୍ମାରକ ସ୍ୱରୂପ ପ୍ରତି ବର୍ଷ ଏକ ରଥ ।
ହୁଅଇ ବିଦାଣି ଗଣେ ନୂତନ ପ୍ରସ୍ତୁତ ॥

କି ପସନ୍ଦ ଦିଶୁଥାଇ ବିମାନ ମଣ୍ଡଣି ।
କଳଶେ ତିଗଳ ଉଡ଼େ ଝାଲର ଛନ୍ଦଣି ॥

ମନ୍ଦିର ପୁରୋଧା ରଥ କରନ୍ତି ପ୍ରତିଷ୍ଠା ।
ସକାଳ ଧୂପ ଉତ୍ତାରୁ ହୋଇ ଏକ ନିଷ୍ଠା ॥

ଚନ୍ଦ୍ରଶେଖର ପ୍ରତିମା ବିମାନେ ସଜାଇ ।
ଆଣନ୍ତି ସେବିକ ଘଣ୍ଟ କାହାଳ ବଜାଇ ॥

ଏକବାର ପ୍ରଦକ୍ଷିଣେ ବସାଇ ରଥରେ ।
କରନ୍ତି ଖଟଣି ବନ୍ଦାପନା ରଥ ପରେ ॥

ସାରଥି ଶପଥେ ଭିଡ଼ା ହୁଏ ଦେବ ରଥ ।
କିଳି କିଳା ରବ ଦେଇ ଚଳିଯାଏ ପଥ ॥

ରଥ ଭିତ୍ରୁ ଥାନ୍ତି ଲୋକେ ହୋଇଣ ଉଷତ ।
ପଡ଼ିଥାଏ ପସରକେ ଗଣନେ ସମର୍ଥ ॥

ଏଣେ ଖଟଣି ପ୍ରସାଦ ପାନ୍ତି ଉପାସକେ ।
ତହୁଁ ଦ୍ୱିପ୍ରହର ଧୂପ କରନ୍ତି ସେବକେ ॥

ଏମନ୍ତେ ଅଶୋକାଷ୍ଟମୀ ଯାତର ସରଇ ।
ବାବାଙ୍କ ଦୟାରୁ ହୃଦେ ପଦ ପ୍ରସରଇ ॥

## ଦମନକ ଚତୁର୍ଦ୍ଦଶୀ

ଚୈତ୍ର ଶୁକ୍ଳ ପକ୍ଷେ ଦମନକ ଚତୁର୍ଦ୍ଦଶୀ ।
ଲିଙ୍ଗ ବାବାଙ୍କର ଯାତ୍ରା କରଯାଏ ନିଶୀ ॥

ଏହି ଯାତ୍ରା ଟେର ଫିଟା ସନ୍ଧ୍ୟା ନୀତି ପରେ ।
ବେଢ଼ା ପରିକ୍ରମା ହୁଏ ପୂର୍ବ ରୂପରେ ॥

ବଡ଼ ଦେଉଳରେ ମାଛି ମହାଦୀପ ଜାଳେ ।
ଗଡ଼ାଙ୍କ ଶୂଦ୍ର ଜଣାଏ ଠାକୁରେ ସେଜାଳେ ॥

ତିନି ବେଢ଼ା ବୁଲି ଦେବ ଦେଉଳେ ପଶନ୍ତି ।
ଗମ୍ଭୀରୀ ପିଣ୍ଡିକା ପରେ ସୁବେଶେ ବସନ୍ତି ॥

ଖଟଣି ବନ୍ଦାପନାଦି ଧୂପ ତହୁଁ ସରେ ।
ଉପାସକେ ଭୋଗ ପାଉଯାନ୍ତି ହରଷରେ ॥

ପୂର୍ବେ ତ୍ରିପୁର ଅସୁର ମାରଣେ ଶ୍ରୀହର ।
ସର୍ବଦେବ ହୋଇଥିଲେ ଏକ ରହୁବର ॥

ତହିଁ ବସି ସାତ ଦିନ ସମୟରେ ଉଭରି ।
ତ୍ରିପୁର ମାରି ବହିଲେ ନାମ ତ୍ରିପୁରାରି ॥

ସ୍ମରଣ ରଖିବା ପାଇଁ ଏହି ଦିନ ନିଶୀ ।
ଯାତ୍ରା ଭିଆଇଲେ ଦମନକ ଚତୁର୍ଦ୍ଦଶୀ ॥

ଅଶୋକାଷ୍ଟମୀରୁ ଯାଇ ଘେନି ସେ ନାଚୟ ।
ସପ୍ତାହରେ କଲେ ପ୍ରଭୁ ବାହୁଡ଼ା ବିଜୟ ॥

ଦେଖି ପାର୍ବତୀ ଆନନ୍ଦ ହେଲେ ହୃଦଦେଶ ।
ଦମନକ ଚତୁର୍ଦ୍ଦଶୀ ଯାତ୍ରା ବିଧି ଶେଷ ॥

## ଅକ୍ଷୟ ତୃତୀୟା (ଚନ୍ଦନ ଯାତ୍ରା)

ବଇଶାଖ ମାସର ଯେ ଶୁକ୍ଳ ପକ୍ଷିଆ ।
ସତ୍ୟ ଯୁଗ ଆଦ୍ୟ ଦିନ ଅକ୍ଷୟ ତୃତୀୟା ॥
ଚାଷୀଙ୍କର ଅନୁକୂଳ ଅକ୍ଷି ମୁଠି ବୁହା ।
ପୂଜା କରନ୍ତି ଯାହାନ୍ତି ଲଙ୍ଗଳ ଯେ ଲୁହା ॥
ଆଜିଠାରୁ ଲାଗିଯାଏ ଚନ୍ଦନ ଉତ୍ସବ ।
ଏକୋଇଶ ଦିନ ଯାତ୍ରା ଠାକୁର ପରବ ॥
ଅପୂର୍ବ ମଣ୍ଡଣି ହୋଇଥାଏ ଚାରୁରୂପ ।
ପୁଷ୍କରିଣୀ ମଧ୍ୟେ ଶୋଭେ ଚନ୍ଦନୀ ମଣ୍ଡପ ॥
ମନ୍ଦିରର ପୁରୋହିତେ କରନ୍ତି ସଂସ୍କାର ।
ସକାଳ ଧୂପର ପର ଶ୍ରୀଚନ୍ଦ୍ରଶେଖର ॥
ଦକ୍ଷିଣ ଦ୍ୱାରେ ଆଳତି ବନ୍ଦାପନା ସାରି ।
ପୋଖରୀ ଗରିଆ ତୋଠେ ନାବେ ବିଜେ କରି ॥
ଚନ୍ଦନ ମଣ୍ଡପେ ଯାନ୍ତି ପଡ଼ଇ ଚାମର ।
ଟେକାଇ ଛତି ତରସ ଆଲଟ ଚିରାଳ ॥
ବାଜଇ ଘଣ୍ଟ କାହାଳ ଅତି ଆଡ଼ମ୍ବରେ ।
ମଣ୍ଡପେ ପ୍ରବେଶ ପ୍ରଭୁ ମହା ସମ୍ବର୍ବରେ ॥
ସେଠାରେ ଖଟଣି ବନ୍ଦାପନା ଶେଷ ।
ଉପବାସିଏ ପ୍ରସାଦ ପାଇ ମନତୋଷ ॥
ମଣ୍ଡପେ ଚନ୍ଦନ କୁଣ୍ଡେ ଛାଡିଏ ଯଳିଳେ ।
ପ୍ରତିମା ବୁଡ଼ାଇ ପଣ୍ଡା ଫେରନ୍ତି ଦେଉଳେ ॥
ଅକ୍ଷୟ ତୃତୀୟା ଯାତ୍ରା ଦିନେ ଏତେ ଶେଷ ।
ରତିର ଯାତରା ବିଧି ଅଟଇ ବିଶେଷ ॥
ଏବେ ବଡ଼ ଦେଉଳରେ ସଞ୍ଜ ଧୂପ ସରେ ।
ଚନ୍ଦନୀ ମଣ୍ଡପେ ଯାନ୍ତି ସେବକେ ଚାପରେ ॥

କୃଷ୍ଣଙ୍କ କାର୍ଷ୍ଣି ପ୍ରତିମା ଚଉକି ଚଢ଼ାଇ ।
ପାଟ ରତନ କାଞ୍ଚନେ ବେଶକୁ ବଢ଼ାଇ ॥
କରନ୍ତି ଖୁରୁମା ଖଜା ଧୂପ ନିଃ ସଂଖୁଡ଼ି ।
ତେଣେ ଚତଃ ସମ ସରେ ଗତି ଚାରି ଘଡ଼ି ॥
ଚନ୍ଦନ ଚାପରେ ବିଜେ ଶ୍ରୀଚନ୍ଦ୍ରଶେଖର ।
ଛତି ତ୍ରାସ ଶୋଭେ ପଦ୍ମେ ଆଲଟ ଚାମର ॥
ବାଜଇ ଘଣ୍ଟ କାହାଳ ନାଚେ ନାଟୁଆଣୀ ।
ବିବିଧ ବାଦ୍ୟ ବଜାନ୍ତି ମେହେନ୍ତରଆଣି ॥
ସେବକେ ବାହି ନିଅନ୍ତି ଜାତ ବାଡ଼ି ମାରି ।
ନାବେ ଜଳେ କୂର୍ମା ଚନ୍ଦ୍ରଦୀପ ଆଦି କରି ॥
କଦଳୀ ପଟେ ଆଳତୀ ଲଗାଇ ଭସାନ୍ତି ।
ତିନି ବେଢ଼ା ବୁଲି ଦିଅଁ କୂଳକୁ ଆସନ୍ତି ॥
ବିଜେ କରନ୍ତି ଦେବତା ମଣ୍ଡିତ ବିମାନେ ।
ଚାଳି ମଣ୍ଡପେ ଚଳନ୍ତି ବିପୁଳ ସମ୍ମାନେ ॥
ସେଠାରେ ବଢ଼ଇ ନିଃସଂଖୁଡ଼ି ରାଜିଧୂପ ।
ବିଜେ ହେଲେ ଦିଅଁ ସବୁ ଦିନେ ଏକାରୂପ ॥
ଲାଗି ଯାଏ ଦିନେ ଦିନେ ନାନା ବିଧ ନାଟ ।
ଦେଖୁଥାନ୍ତି ନରନାରୀ ବସି ବାଟ ଘାଟ ॥
ତହୁଁ ଭ୍ରମଣି ଘେନାଇଁ ଛତିଶ ନିଯୋଗ ।
ସ୍ୱଗ୍ରାମେ ଭୁଞ୍ଜନ୍ତି ସେବକଙ୍କ ଦ୍ୱାରେ ଭୋଗ ॥
ଶରଣକୂଳକୁ ଲଗା ନ ହୋଇଛି ଛଡ଼ା ।
ବାବାଙ୍କ ଭକତ ଗାଆଁ ସେ ଭିଖାରିପଡ଼ା ॥
ହୋଇବାରୁ ହରିହର ମୂରତି ଅର୍ଚ୍ଚନ ।
ହରିହର ପୁର ନାମେ ବ୍ରାହ୍ମଣ ଶାସନ ॥
ସେ ଗ୍ରାମରେ ପ୍ରତି ବିପ୍ର ଦ୍ୱାରେ ପୂଜା ପାଇ ।
ଲେଉଟନ୍ତି ନିଜ ସନାତନକୁ ଘେନାଇଁ ॥
ଗ୍ରାମ ବୁଲି ବେଢ଼ା ଦେଇଁ ଦେଉଳେ ବିଜୟେ ।
ବଢ଼ଇ ବଡ଼ ସିଂହାର ନିଶାର୍ଦ୍ଧ ସମୟେ ॥
ଏହିପରି ଏକେଇଶ ରାତି ହୁଏ ଯାତ ।
ଚନ୍ଦନ ଯାତ୍ରର ବୋଲି ଅଛିଳେ ବିଖ୍ୟାତ ॥

## ପରଶୁରାମାଷ୍ଟମୀ

ଆଷାଢ଼ ଶୁକ୍ଳ ପରଶୁରାମ ଜନ୍ମାଷ୍ଟମୀ ।
ଗ୍ରୀଷ୍ମ ଶେଷେ ଆସେ ବର୍ଷାରମ୍ଭେ ଭୂମି ॥

ତ୍ରେତା ଯୁଗେ ବ୍ରହ୍ମ ବେତ୍ତା ଜମଦଗ୍ନି ମୁନି ।
ସୁନ୍ଦରୀ ପତି ବ୍ରତୀ ରେଣୁକା କାମିନୀ ॥

ତାଙ୍କଠାରୁ ଜନମିଲେ ଶ୍ରୀପରଶୁଧର ।
ତପୀବୀର ଶ୍ରେଷ୍ଠ ବିଷ୍ଣୁ ଷଷ୍ଠ ଅବତାର ॥

ତପୋବଳେ ବଶ କଲେ ବ୍ରହ୍ମା ହରିହର ।
ନିଃ କ୍ଷତ୍ରିୟ କଲେ ପୃଥ୍ୱୀ ଏକୋଇଶ ଥର ॥

କ୍ରମେ ବସୁମତୀ ଷଣ୍ଡି ବଂଶ ଗ୍ରାମେ ଗ୍ରାମେ !
ପରଶୁରାମଙ୍କ ନାମେ ତୁମୁଳ ସଂଗ୍ରାମେ ॥

ଶିବଙ୍କର ମହାଭକ୍ତ ଭୁବନ ବିଖ୍ୟାତ ।
ପରଶୁରାମ ଅଷ୍ଟମୀ ତେଣୁ କଲେ ଯାତ ॥

ସକାଳ ଧୂପ ଲଗାରୁ ବଢ଼ଇ ଖଟଣି ।
ବନ୍ଦାପନା ବିଧି ଆଦି ସକଳ ସେକ୍ଷଣି ॥

ପରଶୁରାମ ଅଷ୍ଟମୀ ନାମେ ଯାତ୍ରା ଶେଷ ।
ଶ୍ରୀ ଲଡ଼୍‌କେଶ ଚରଣେ ଲୋଟୁ ଶିରୋଦେଶ ॥

## ଶୟନକ ଚତୁର୍ଦ୍ଦଶୀ

ଆଷାଢ଼ ଶୁକ୍ଳ ଚତୁର୍ଦ୍ଦଶୀ ଶୟନକ ।
ଶୁଅନ୍ତି ବରଷା ଚାରି ମାସ ତ୍ର୍ୟମ୍ବକ ॥

ଆଜିଠାରୁ ଅନୁକୂଳ ଚାତୁର୍ମାସ୍ୟା ବ୍ରତ ।
ପୂର୍ବ ବିଧାନେ ସେବକେ ସେବନ୍ତି ନୀରତ ॥

ଦେଉ ପିଟା ସନ୍ଧ୍ୟା ନୀତି ସରିବା ଉତ୍ତାରେ ।
ବେଢ଼ା ପରିକ୍ରମା କରଯାଏ ତିନି ବାରେ ॥

ଗମ୍ଭୀରୀ ବିଜେ ଖଟଣି ବନ୍ଦାପନା ଧୂପ ।
ବଢ଼େ ଦମନକ ଚତୁର୍ଦ୍ଦଶୀ ଅନୁରୂପ ॥

ଶୟନକ ଚତୁର୍ଦ୍ଦଶୀ ଯାତ୍ରା ସମାପତି ।
ଚିନ୍ତା କରେ ହୃଦୟରେ ସଦା ଉମାପତି ॥

## ଶ୍ରାବଣୀ (ପବିତ୍ରାରୋପଣ) ଯାତ୍ରା

ଶୁକ୍ଳ ପକ୍ଷ ଚତୁର୍ଦ୍ଦଶୀ ଶ୍ରାବଣ ମାସର ।
ଶିବ ପବିତ୍ରା ରୋପଣ ଯାତ୍ରା ଏ ବାସର ॥

ସକଳେ ଲୋକେ ବୋଇନ୍ତି ଶ୍ରାବଣୀ ଯାତର ।
ଶେଷ ହୁଏ ସବୁ ବର୍ଷ ନବୁଡ଼ୁଣୁ ଖର ॥

ସକାଳ ଧୂପ ସରିଲାପରେ ଦି ପହରେ ।
ଶ୍ରାବଣୀ ଭୋଗ ତିଆରି ହୁଏ ରୋଷଘରେ ॥

ନଡ଼ିଆ ପଇତା ଧରି ସୁବେଦୀ ବ୍ରାହ୍ମଣେ ।
ଲିଙ୍ଗରେ ଲଗି କରନ୍ତି ଠାକୁର ଗହଣେ ॥

ଅସଂଖ୍ୟ ଯାତ୍ରୀ ଆସନ୍ତି ଧରି ବୋଝ ଭାର ।
ହଣ୍ଡା ହାଣ୍ଡି ତଙ୍କା ଆଦି ଶ୍ରାବଣୀ ସମ୍ଭାର ॥

ବେଢ଼ାର ବାହାରେ ଥାଏ ବହୁତ ବଜାର ।
କିଣୁଥାନ୍ତି ଲୋକେ ଯାହା ଦରକାର ଯାର ॥

ରହମ ପାଚୁଅ କ୍ଷୀରୀ ଲାଗିଯାଏ ଚୁଲି ।
ବେଢ଼ା ମଧ୍ୟେ କର୍ମଚାରୀ ଦେଖୁଥାନ୍ତି ବୁଲି ॥

ଲାଗିଯାଏ ସଞ୍ଜଯାଏ ଶ୍ରାବଣୀ ତିଆର ।
ଥଅନ୍ତି ଭକତେ ବେଢ଼ା ଭିତର ଦୁଆର ॥

ମାଳି ଗୁଡ଼ିଆ ସୁଆର ସେବକ ଗରଡ଼ା ।
ଯଜମାନଙ୍କ ଖଟଣି କରୁଥାନ୍ତି ବଡ଼ା ॥

ଦୂରୁଁ ଦିଶଇ ଧୂଆଁ କି ଅକାଳ କୁହୁଡ଼ି ।
ବେଢ଼ା ଗୋଟି ଯାକ କିବା ଯାଉଅଛି ବୁଡ଼ି ॥

ପାଚୁଅ ରହମ କ୍ଷୀରୀ ଗୋରସ ନଡ଼ିଆ ।
ମସଲ ମହକୁ ଥାଏ ଶାଟି ଗୁଡ଼ ଦିଆ ॥

ଉଖୁଡ଼ା ଖଇ ଦହି ଯେ ଖଟଣି ଗରଡ଼ା ।
ଗମ୍ଭୀରରେ ସରକାରୀ ଭୋଗ ହୁଏ ବଡ଼ା ॥

ଭୋଗ ଲାଗିବା ସଙ୍ଗରେ ଧୂପ ବନ୍ଦାପନା ।
ପ୍ରସାଦ ପାଇବାପାଇଁ ଯାନ୍ତାଏ ଜନୁନା ॥

କ୍ରମରେ ସକଳ ଲୋକେ ପାଆନ୍ତି ପ୍ରସାଦ ।
ଆସ୍ୱାଦନ କରି ମୋଦ ଶ୍ରାବଣୀ ସୁସ୍ୱାଦ ॥

ବଳକା ଶ୍ରାବଣୀ ଭୋଗ ସାଙ୍ଗି ଘର କରି ।
ଯାନ୍ତି ଉପାସକେ ହଣ୍ଡାହାଣ୍ଡି ଯାକେ ଭରି ॥

ଲାଗିଯାଏ କେତେବେଳେ ଗହଳ ଚହଳ ।
କାନ ଅତଡ଼ା ପଡ଼ଇ ଲୋକ କୋଳାହଳ ॥

ସରିଲା ଶ୍ରାବଣୀ ଯାତ୍ରା ଶୁଣି ହୁଏ ତୋଷ ।
ଶାରଦ୍‌କେଶ ମହେଶ କ୍ଷମାକର ଦୋଷ ॥

## ଯମ ଦ୍ୱିତୀୟା

ଯମ ଦ୍ୱିତୀୟା କାର୍ତ୍ତିକ ମାସ ଶୁକ୍ଳପକ୍ଷେ ।
ଯାତ୍ରା ହୁଏ ପ୍ରଭୁ ପୁରତନ ସତ୍ୟ ରକ୍ଷେ ॥

ସୂର୍ଯ୍ୟଙ୍କ ଯମୁନା ଯମ ତନୟା ତନୟ ।
ବାଲ୍ୟ ବିଗତ ହୁଅନ୍ତେ ତରୁଣ ସମୟ ॥

ଯମୁନା ଦେଖି ଯମଙ୍କ ସୁକୁମାର ତନୁ ।
କାମେ ଘାରି ହୋଇ ମୂର୍ଚ୍ଛି ନପାରନ୍ତି ମନୁ ॥

କିପରି କହିବେ ଲାଜ ମରଣକୁ ବଳେ ।
ଭାବନ୍ତି ପ୍ରେମ ପାଶରେ ବାନ୍ଧିବି କୌଶଳେ ॥

ଏଦିନ ସଜାଇ ବହୁ ଭୁଞ୍ଜିବା ଦରବେ ।
ଭାଇଙ୍କି ଭୋଜନ ଦେବେ ଡାକିଲେ ଗୌରବେ ॥

ଯୋଗାଣ ଶେଷେ ମାନସେ ନପାରି ସମ୍ଭାଳି ।
ଲାଜ ଭୟ ଦୂରକରି ଜଣାଇଲେ ବାଳୀ ॥

ଭାଇ ! ତୁମ୍ଭର ସୁନ୍ଦର ରୂପ ଦେଖି କରି ।
ଅବିରାମ କାମଜ୍ୱରେ ଜୀଉଛି ନମରି ॥

ଏଥିରୁ ଉଦ୍ଧର ମୋତେ ପ୍ରୀତି ଦେଇ ଥରେ ।
ନୋହିଲେ ନିବାର ମୋତେ ଆପଣା ହାତରେ ॥

ଶୁଣି କ୍ରୋଧେ ଯମ କହି ରେ ହତଭାଗିନୀ ।
ଧିକ୍ ତୋତେ କହୁ ଏହା ହୋଇ ମୋ ଭଗିନୀ ॥

ଭାଇ ଭଉଣୀ ପ୍ରଣୟ ଶୁଣିଲେ ସଂସାରେ ।
କି ବୋଲିବେ ତୋତେ ମୋତେ ଭଜି ବୁଝିବାରେ ॥

ନେହୁର ହୋଇ କହନ୍ତେ ଯମୁନା ଅନେକ ।
ଶାପ ଦେଲେ ଯମ ବହି କୋପ ଅତିରେକ ॥

ଯେ ଦେହେ ନଥିବ ଭାବଲବ ଅଭାଗିନି ।
ଯାଅ ନଈ ହୋଇ ବହି ବେଗେବେଗେ ଭଗିନି ॥

କହିଲେ ଯମୁନା ଭାଇ ! ମନେ ବହି ତାପ ।
ସାନ ଭଉଣୀକି ଦେଲ ଏଡ଼େ ଅଭିଶାପ ॥

କେମନ୍ତେ କାମ ଲାଳସା ମେଣ୍ଟିବ ମୋହର ।
ଚରଣ ଧରେ ଏଥିକି ପ୍ରତିକାର କର ॥

ଭଣନ୍ତି ଭଗିନି ! ଚଳ କଳିନ୍ଦ ପର୍ବତେ ।
କାମଗଜ ମତଳପ କର ଅନାରତେ ॥

ଅବଗାହ୍ କଳେବର ଯିବଟି ମିଳାଇ ।
ନଦୀ ହୋଇ ବହିଯିବୁ ପର୍ବତ ଜାଳାଇ ॥

କଳିନ୍ଦ ପରବତରୁ ହୋଇଥିବୁ ଜାତ ।
କାଳିନ୍ଦି ନାମ ତୋହର ହୋଇବତ ଖ୍ୟାତ ॥

ବ୍ରଜ ଧାମ ବୃନ୍ଦାବନ ପରିକ୍ରମା କରି ।
ଗଙ୍ଗାରେ ଝାସ ପାତକ ଧ୍ୱଂସିବୁ ସେଦରି ॥

କାଳେ ଗୋକୁଳେ ଶ୍ରୀହରି କୃଷ୍ଣ ଅବତାର ।
ଭୁବନ ମୋହନ ମୂର୍ତ୍ତି କରିବେ ବିହାର ॥

"ତୋ" ତୀରେ କୁଞ୍ଜ କୁଟୀରେ ଗୋପିନୀଙ୍କ ସଙ୍ଗେ ।
ନୀପ ମୂଳେ ରାସକ୍ରୀଡ଼ା କରିବେଟି ରଙ୍ଗେ ॥

ବ୍ରଜ ବାଳକ ମେଳେ ରାମ ହରି ବେନି ଭାଇ ।
କରୁଥିବେ ଗୋଚାରଣ ତଟେ ବେଣୁବାଇ ॥

ତାହା ଦେଖି ତୋର ମୋର ଲାଳସା ମେଣ୍ଟିବ ।
ଅଶେଷ ଜନମ ପାପ ସନ୍ତାପ ତୁଟିବ ॥

ବୋଇଲେ ଯମୁନା କୃପାନଟହିଁ କିଛି ତେ ।
ଭଗିନୀକି ଘୋର ଶାପ ବିହିଲ କୂର୍ପିତେ ॥
ଏଣୁ ମୋର ଅଭିଶାପ ଘେନ ସହୋଦର ।
ଆଜିଠାରୁ ତୁମ୍ଭ ମୂର୍ତ୍ତି ହେଉ ଭୟଙ୍କର ॥
ତୁମ୍ଭଙ୍କୁ ଙ୍କେ ଦେଖି ଭୟେ କାମେ ନ ମର୍ଜିବେ ।
ନରକ ପୁରେ ଗଢନ ହେତାର୍ଡି ଭଜିବେ ॥
ଅନ୍ୟୋନ୍ୟରେ ଶାପ ଦେଇ ସୋଦର ସୋଦରୀ ।
ଯେ ଯାହା ଫଳ ଭୋଗିଲେ କରମ ଆଦରି ॥
ସେହି ଦିନଠାରୁ ଯମ ହେଲେ ଜଦାକାର ।
ମହିଷ ବାହନ କାଳରୂପ ଭୟଙ୍କର ॥

ବିଧାତା ଭିଆଣ କଲେ ଆଜି ଯେଉଁ ଜନ ।
ଅନ୍ନ ବ୍ୟଞ୍ଜନ ଭଗିନୀ ହସ୍ତରୁ ଭୋଜନ ॥
କରିବ ସହୋଦରୀକି ବାସ ଭୂଷା ଦେଇ ।
ବରଷକ ପାପ ତାପ ଯିବ କ୍ଷୟ ହୋଇ ॥
ରବିଙ୍କ ଅନୁରୋଧରେ ଶିବାଜୟେ ଯାତ ।
ଯମ ଦ୍ୱିତୀୟା ନାମରେ ମରତ୍ୟେ ବିଖ୍ୟାତ ॥

ସକଳ ଧୂପ ସରାରୁ ସରଇ ଯାତର ।
ଶରଦ ଋତୁ ପହରେ ଥାଉଁ ଥାଉଁ ଖଗ ॥

## ଉଦ୍‌ଥାପନ ଚତୁର୍ଦ୍ଦଶୀ

କାର୍ତ୍ତିକ ମାସର ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ।
ଶରଦ ଋତୁରେ ଆସେ ହିମନ୍ତ ବିକାଶି ॥
ଆଷାଢ଼ ମାସ ଶୁକ୍ଳ ଚତୁର୍ଦ୍ଦଶୀ ଠାରୁ ।
ଶିବ ଶୋଇଥାନ୍ତି ଶେଜେ ଉଠନ୍ତି କୋଠରୁ ॥

ଚାତୁର୍ମାସ୍ୟା ବ୍ରତ କରଯାଏ ସମାପନ ।
ପୂର୍ବ ସ୍ମୃତି ମତେ ଅଦ୍ୟ ଯାତ୍ରା ଉଦ୍‌ଯାପନ ॥

ବାବାଙ୍କ ମନ୍ଦିରେ ଟେରଫିଟା ସନ୍ଧ୍ୟା ନୀତି ।
ଲାଗିଯାଏ ପୂର୍ବପରି ବେଢ଼ା ବୁଲ ରୀତି ॥

ପରିକ୍ରମା ପରେ ବିଜେ ପିଣ୍ଡିକା ଉପରେ ।
ବନ୍ଦାପନା ମଣ୍ଡାପୂଜା ଖଟଣି ଧୂପରେ ॥

ବଡ଼ସିଂହାର ବିଧି ବଢ଼େ ପ୍ରହରେକ ନିଶୀ ।
ଏହି ରୂପେ ଉତ୍‌ଥାପନ ଯାତ୍ରା ଚତୁର୍ଦ୍ଦଶୀ ॥
ଶିବ ଚତୁର୍ଦ୍ଦଶୀ ଯାତ୍ରା ହେଲ ସମାପତି ।
ହର ଗଉରୀ ଚରଣେ ସଦା ଥାଉ ମତି ॥

ତୃତୀୟ ଭାଗ ସମାପ୍ତ

# ଚତୁର୍ଥ ଭାଗ

## ଯାନ ଯାତ୍ରା
## ଶ୍ରୀପଞ୍ଚମୀ

ମାଘ ମାସ ଶୁକ୍ଳ ପକ୍ଷ ତିଥି ଶ୍ରୀପଞ୍ଚମୀ ।
ବହଇ ଶ୍ଵେରୀ ବସନ୍ତ ଶୀତ ଋତୁ ରମି ॥
ସକାଳ ଧୂପର ପର ଶ୍ରୀ ଚନ୍ଦ୍ରଶେଖରେ ।
ବିଜୟେ ଦୋଳ ମଣ୍ଡପେ ଅତି ଆଡ଼ମ୍ବରେ ॥
ଏଦିନ ବିଦ୍ୟାର୍ଥୀଙ୍କର ସାରସ୍ଵତୋତ୍ସବ ।
ଲେଖନୀ ମସି ଅଧାର ପୂଜା ସମ୍ଭବ ॥

ଅପରାହ୍ନେ ହାତେ ଧରି ଚିତ୍ର ନଟିକାଳ ।
ଠାକୁରଙ୍କ ଆଗେ ଗୀତ ଗାଆନ୍ତି ସକଳ ॥
ତହୁଁ ଟେର ଫିଟା ଅନ୍ତେ ସନ୍ଧ୍ୟାରେ ଆରତି ।
ନିଃସଂଶୁଦ୍ଧି ଧୂପ ଶେଷେ ଭ୍ରମଣି କରନ୍ତି ॥
ଗ୍ରଳି ଧୂପାନ୍ତେ ଶରଣକୁଳେ ପରସନ୍ନେ ।
ଫେରି ଦ୍ୱାର ପୂଜା ସାରି ବ୍ରାହ୍ମଣ ଶାସନେ ॥
ବଜାର ଗଣ୍ଡ ମାଦଳ ଦେଉଳେ ପଶନ୍ତି ।
ତେଣିକି ବଢ଼ଇ ସନ୍ଧ ଧୂପ ଆଦି ନୀତି ॥

## ଚାଚେରୀ (ଚର୍ଚ୍ଚରୀ) ଯାତ୍ରା

ଫାଲଗୁନ ମାସ ଶୁକ୍ଳ ଦଶମୀ ତିଥିରେ ।
ଫଲ୍‌ଗୁ କ୍ରୀଡ଼ା ଅଧିବାସ ହୁଅଇ ରତିରେ ॥

ଏଦିନ ଦେବତା ଫଗୁ ଭିତରେ ଖେଳନ୍ତି ।
ବାସି ଏକାଦଶୀଠାରୁ ବାହାରେ ବୋଳନ୍ତି ॥

ତିନି ଦିନ ଯାତ୍ରାପରେ ପଡ଼େ ଚତୁର୍ଦ୍ଦଶୀ ।
ଦେବଙ୍କ ବହ୍ନି ଉତ୍ସବ କରଯାଏ ନିଶୀ ॥

ଠାକୁର ଭମଣି ପରେ ଦୋଳ ମଣ୍ଡପରେ ।
ପୁରୋଧା ହୋମ କରନ୍ତି ସ୍ଥଣ୍ଡିଳ ଉପରେ ॥

ପୂର୍ଣ୍ଣାହୁତି ସମର୍ପଣେ ଧରି ନିଆଁ ହୁଳା ।
ଧାଆନ୍ତି ପଞ୍ଚୁପାଳକ ପଣ୍ଡା କୋଳାହଳା ॥

ଉତ୍ତର ଶରଣକୁଳ ଗ୍ରାମର ବାହାରେ ।
ଅଗ୍ନି ସଜାଡ଼ି ଥାଆନ୍ତି ଲଗି ଖଞ୍ଜାଦାରେ ॥

ଲଗାଇ ଦିଅନ୍ତି ଗୁଗିପଟୁଁ ନିଆଁ ହୁଳା ।
ଆକାଶ ମଣ୍ଡଳ ବ୍ୟାପି ଜଳେ ହୁ ହୁ ଜ୍ୱାଳା ॥

ଦେଖଣାହାରିଏ କେତେ ଫୋପାଡ଼ନ୍ତି କାଠ ।
ଠୋ ଠୋ ଢୋ ଢା ଫୁଟି ଜଳେ ଶିଖାକି ବିରାଟ ॥

ମନେ ହୁଏ ଅଗ୍ନିଦେବ ସପ୍ତ ଜିହ୍ୱା ମେଲି ।
ଖାଦ୍ୟ ଦ୍ରବ୍ୟ ଉଦରକୁ ଦେଉଛନ୍ତି ଠେଲି ॥

ମଧ୍ୟେ ପୋତାଥାଏ ଉଚ୍ଚ ବାଉଁଶ ସଳଖ ।
ଜଳି ଯେଉଁ ଆଡ଼େ ଡଳେ କରନ୍ତି ପରଖ ॥

ଆଗତକୁ ସେହି ପଟେ କ୍ଷେତ ଭଲ ହୁଏ ।
ପୁରୁବ ପ୍ରବାଦ ଅଛି ଅନ୍ୟଥାଟି ନୋହେ ॥

ତିନିବାର ଚଉଦୋଳ ଅଗ୍ନି ପ୍ରଦକ୍ଷିଣେ ।
ଫେରନ୍ତି ବେଢ଼ାକୁ ଦେବ ତକ୍ଷଣେ ଦକ୍ଷିଣେ ॥

ଚତୁର୍ଦ୍ଦଶୀ ବେଢ଼ା ପ୍ରଭୁ ପ୍ରଦକ୍ଷିଣ କରି ।
ମନ୍ଦିରକୁ ପୂର୍ବ ଦ୍ୱାର ବାଟେ ଯାନ୍ତି ଫେରି ॥

ତହୁଁ ସନ୍ଧ ଧୂପଠାରୁ ବର୍ଦ୍ଧିଯାଏ ନୀତି ।
ପ୍ରତି ବର୍ଷ ଦେବ ଅଗ୍ନି ଉତ୍ସବ ଏ ରୀତି ॥

ପୂର୍ଣ୍ଣାହୁତି ଘୃତ ନାରୀକେଳ ଭସ୍ମ ଧରି ।
ରଜକଂଟୀ ଯାଏ ପରଦିନ ପ୍ରତିହାରୀ ॥

ଦେବାଗ୍ନି ରଜନୀ ରଜ ଅଗ୍ନି ମହୋତ୍ସବ ।
ଶାସ୍ତ୍ର ସମ୍ମତ ଏକଥା ଅଟଇଟି ଧ୍ରୁବ ॥

## ଦୋଳ ଯାତ୍ରା

ଫାଲଗୁନ ମାସ ଶୁକ୍ଳପକ୍ଷ ପୌର୍ଣ୍ଣମାସୀ ।
ବସନ୍ତ ଦୋଳ ଯାତର ପାଳଯାଏ ଆସି ॥

ସଜା ହୋଇଥାଏ ପୁଣି ସେ ଦୋଳ ମଣ୍ଡପ ।
ବନ୍ଧା ହୋଇଥାଏ ଉର୍ଦ୍ଧ୍ୱେ ଶୁଭ୍ର ଚନ୍ଦ୍ରାତପ ॥

ସକାଳ ଧୂପର ଶେଷେ ଘଣ୍ଟା ଦି ବଜାଇ ।
ବିଜୟେ ସରବ ଦେବେ ସୁବେଶ ସଜାଇ ॥

ଗମ୍ଭୀରୀ ପିଣ୍ଡିକା ଦିଅଁ ମଣ୍ଡପରେ ବିଜେ ।
ସରଣ ପୁର ଶିରୀକି ମରଚେ ବିରଜେ ॥

ଚେର ଫିଟା ଅନ୍ତେ କରଯାନ୍ତେ ସନ୍ଧ୍ୟାଳତି ।
ଲଗାଇ ଯୋଡ଼ା ମସାଲ ଠାକୁରଙ୍କ କତି ॥

ରୁପା ତମ୍ବା ସ୍ୱର୍ଣ୍ଣ ପୂର୍ଣ୍ଣ କଳସ ସଜଡ଼ା ।
ଜ୍ୟୋତିଷ ରତ୍ନ ଆସଇ ଧରି ପାଞ୍ଜି ବିଡ଼ା ॥

ନୂତନ ବସନ ପିନ୍ଧି ନୂଆ ପାଞ୍ଜି କହେ ।
ସର୍ବସାଧାରଣ ଶୁଣୁ ଥାଆନ୍ତି ଆଗ୍ରହେ ॥

ଆୟ ବ୍ୟୟ ରାଗ ସଂଖ୍ୟା ସପତାଙ୍କ ଯୋଗ ।
ଗ୍ରହଣ ଉପରାଗାଦି ଶସ୍ୟ ଆୟ ଭୋଗ ॥

ତହୁଁ ଦେବେ ସରକାରୀ ଫଗୁ ଗୁଆ ଦିଆ ।
ପରେ ଆଗନ୍ତୁକଙ୍କର ଠାକୁରଙ୍କୁ ଛୁଆଁ ॥

ସେହି ଫଗୁ ଗୁଆ ଅଛି ମୁଠି ବୁହା ଦିନ ।
ଗ୍ରସିଏ ପ୍ରଥମେ ଧରି ବୁଣନ୍ତି ବିହନ ॥

ନିଃସ୍ୱଂଶୁଦ୍ଧି ଧୂପ ଫଗୁ ଗୁଆ ଛୁଆଁପରେ ।
ସକଳ ବେଳେ ଚଳନ୍ତି ଦେଉଳ ଭିତରେ ॥
ଚନ୍ଦ୍ରଶେଖର ପ୍ରତିମା ବିଜେ ଚଉଦୋଳେ ।
ମଦନ ମୋହନ ବିଜେ ଫଗୁ ଗଣ୍ଡି ଦୋଳେ ॥
ପୂର୍ବବ ପ୍ରକାରେ ଧୂପ ଦ୍ୱାର ପୂଜା ସାରି ।
ବଡ଼ଦେଉଳ ଫେରନ୍ତି ଶଙ୍କର ମୁରାରି ॥
ମାଣ୍ଡୁଥାନ୍ତି ଫଗୁ ନାଗରିକ ଜନେ ଯେତେ ।
କେହୁ କଳନା କରିବ ବୋଲି ଏତେ ସେତେ ॥
ଛତି ଛାଟ ବାନା ମୁଠା ଆଲଟ ଚାମର ।
ଟେକିଥାନ୍ତି ବାଜେ ଘଣ୍ଟା କାହାଳ ମର୍ଦ୍ଦଳ ॥
କମ୍ପଇ ମେଦିନୀ ନାନାବିଧ ବାଦ୍ୟ ନାଦେ ।
ପୁଲକ ଥାଏ ହୃଦୟ ବିପୁଳ ଆହ୍ଲାଦେ ॥
ଏହିପରି ସମାରୋହେ ସରେ ଦୋଳଯାତ ।
ବାବାଙ୍କ ଚରଣ ତଳେ ଲୁଳୁ ମୋର ମାଥ ॥

## ଦହି (ହୁରି ଖେଳ)

ପୂର୍ଣ୍ଣମାସୀ ବାସି ଚୈତ୍ର କୃଷ୍ଣ ପ୍ରତିପଦା ।
ଏହି ଦିନ ଦହିଖେଳ ପରମ ସୁଖଦା ॥
ସନ୍ଧ୍ୟାନେହୁ ପ୍ରଭୁ ଚଉଦୋଳେ ବିଜେକରି ।
ଗର୍ଭେ ଧୂପ ଦ୍ୱାର ପୂଜା ସାରନ୍ତି ସେପରି ॥
ଧରିଥାନ୍ତି ସେବାକାରୀ କନ୍ଧେ ଦହିଘର ।
ମାରନ୍ତି ପିଚିକା ଯହାକୁ ଇଛା ଯେ ଯାହାର ॥
ନାଲି ନେର୍ଚ୍ଚି କଳା ରଙ୍ଗ କେତେ ପରକାର ।
ନଥାଏ ହାରି ଗୁହାରି ଏଥୁ ପାଇଁ କାର ॥
ପିଚିକା ମାଡ଼ରେ ଦାଣ୍ଡ ଓଦା ହୋଇଯାଏ ।
ସୂର୍ଯ୍ୟ ଅସ୍ତ ସମୟକୁ ସବୁ ସରିଥାଏ ॥
ଖଇଡ଼୍ ବାବାଙ୍କ ପାଦ ସଦା କରି ଧ୍ୟାନ ।
ସରିଗଲ ହୁରିଖେଳ ପିଚିକା ବିଧାନ ॥

## ଭଉଁରୀ ଯାତ୍ରା

ଚନ୍ଦନ ଯାତର ଶେଷ ଏକୋଇଶ ରାତି ।
ଭଉଁରୀ ଯାତର ହୁଏ ସନ୍ତରୁ ପାହାନ୍ତି ॥
ଏଦିନ ଚନ୍ଦ୍ରଶେଖର ପାର୍ବତୀ ପ୍ରତିମା ।
ରାଧା କୃଷ୍ଣ ନଉକାରେ ଦିଶନ୍ତି ସୁଷମା ॥
ସବୁଦିନ ପରି ରାପ ତିନି ବେଢ଼ା ବୁଲେ ।
ନୀଳ ସରୋବରେ ଚଉଦିଗେ ସମତୁଲେ ॥
ବୁଲନ୍ତି ଭଉଁରୀ ରାତି ବେଢ଼ା ଆରମ୍ଭରେ ।
ପୋଖରୀର ଚାରି କୋଣେ ପାଞ୍ଚ ପାଞ୍ଚ ଥରେ ॥
ଏମନ୍ତେ କୋଡ଼ିଏ ଘେର ବୁଲିବାର ପରେ ।
ବେଢ଼ାଏ ବୁଲନ୍ତି ଦୀପ ଦଣ୍ଡୀ ସମୀପରେ ॥
ମୋଟ ଏକୋଇଶ ଘେର ଭଉଁରୀ ବୁଲନ୍ତି ।
ରୂପେ ଚନ୍ଦ୍ରଦୀପ କୁମ୍ଭୀ ବାଣକୁ ମାରନ୍ତି ॥
ତାପରେ ଛାଡ଼ନ୍ତି ଦେବ ଚନ୍ଦନ ରୂପକୁ ।
ବିମାନେ ବସି ଚଳନ୍ତି ଗର୍ଭ ମଣ୍ଡପକୁ ॥
ସେ ରାତି ନୃତ୍ୟ କୀର୍ତ୍ତନ ସବୁଠାରୁ ବଳେ ।
ରାତି ପାଇ ଯାଏ ଲୋକ ରହଳ ଚହଳେ ॥
ହରି ହର ପୁରବାସୀ ଶ୍ରୀଦଧିବାମନ ।
ଆସିଥାନ୍ତି ନିଯୋଗରେ ଆରୋହୀ ବିମାନ ॥
ସର୍ବେ ତିନି ଚଉଦୋଳେ ଭ୍ରମଣି କରନ୍ତି ।
ଦ୍ୱାର ପୂଜା ଭୋଗ ଭୁଞ୍ଜ ମନ୍ଦିରେ ଫେରନ୍ତି ॥
ଏସନେ ସରେ ବାବାଙ୍କ ଭଉଁରୀ ଯାତର ।
ସରିଲ ବେଳକୁ ଉଇଁଥାଏ କୁଆଁତାର ॥

## ମହାଦେବ ବିବାହ

ସତ୍ୟ ଯୁଗେ ଦକ୍ଷ ବ୍ରହ୍ମା କଲେ ମହାଯାଗ ।
ସୁର ସୁରେ ଚରଚରେ ଦେଲେ ହବିର୍ଭାଗ ॥
ବଡ଼ଈଅ କୁଆଁରିଙ୍କ ହୀନ ଆଚରଣ ।
ଭାବି ଶିବ ସତୀ ଯଜ୍ଞେ କଲେ ବରଣ ॥

ବାରତା ପାଇ ଗଉରୀ ମନେ ବହି ରାଗ ।
ପ୍ରବେଶିଲେ ଅଭିମାନେ ଯଜ୍ଞ ଭୂମି ସ୍ଥଳ ॥

ଦେଖିଲେ ଭଗିନୀମାନେ ଛତି ଭଉ ସଙ୍ଗେ ।
ଦେବତା ଗଣ ସୁବେଶ ସାଜି ନବରଙ୍ଗେ ॥

କ୍ରୋଧରେ ଡେଇଁପଡ଼ିଲେ ଦେବୀ ଅଗ୍ନି କୁଣ୍ଡେ ।
ଏହା ଦେଖି ପଦେ କଥା ନଫିଟେ କା ତୁଣ୍ଡେ ॥

ଶୁଣି କ୍ରୁଦ୍ଧେ ଭବେ ରୁଦ୍ର ପଶି ଯଜ୍ଞଶାଳେ ।
ଶ୍ୱଶୁର ଶିର ଛେଦିଲେ ପରଶୁର ଧାରେ ॥

ସତୀଙ୍କି ହରାଇ ହର ହେଲେ ବଇରାଗି ।
ତପସ୍ୟାରତ ନୀରତ ନିଦ୍ରାହାର ତ୍ୟାଗି ॥

ଦେବୀଙ୍କି ଅଗ୍ନି ଦେବତା ନପାରିଲେ ଭକ୍ଷି ।
ଆସିଲେ ହିମ ଶଇଳେ ଗୁପତରେ ରସି ॥

ମେନା ଅପସରୀ ଗିରିରାଜ ମନୋହାରୀ ।
ଦେଖିଲେ ପର୍ବତେ ସୁକୁମାରୀ ସୁକୁମାରୀ ॥

ବେନି ଭୁଜେ ତୋଳି ନିଜେ କାନ୍ତେ ଦେଖାଇଲେ ।
ଦମ୍ପତୀ ପ୍ରାର୍ଥିତା ପୁତ୍ରୀ କରି ରଖାଇଲେ ॥

ପର୍ବତରୁ ଉତପତ୍ତି ହେଲ ବୋଲି ଜାଣି ।
ପାର୍ବତୀ ନାମ ତାହାର ହେଲେ ରଜା ରଣୀ ॥

କାଳକ୍ରମେ ଯୁବାବସ୍ଥା ହୋଇଲା ଆଗତ ।
ସୁନ୍ଦରୀ ପଣରେ ସରିନାହିଁକେ ଜଗତ ॥

ନାରଦଙ୍କ ମନ୍ତ୍ରଣାରେ ତାତ କଲେ ଥୟ ।
କୁମାରୀକି ଶ୍ରୀହରିଙ୍କି ବରିବା ନିଶ୍ଚୟ ॥

ଶୁଣି ଗଉରୀ ସହୀଙ୍କ ସଙ୍ଗତେ ଚଳିଲେ ।
ହରଙ୍କୁ ବର ବରଣେ ବନସ୍ଥେ ଭଜିଲେ ॥

ଅନଶନ ବ୍ରତେ ପ୍ରାଣ ହେଲା କଣ୍ଠାଗତ ।
ଅକସ୍ମାତ ଶିବ ଦେବୀ ଆଗେ ଉପଗତ ॥

ଝରିଆକ୍ଷି ମେଳ ଜଳ ମିଶା ଯେଉଁ ସୁଖ ।
ଜାଣନ୍ତି ସେ ବେନି ଜନେ ଗଲା ସବୁ ଦୁଃଖ ॥

ଶିବ କହିଲେ ପାର୍ବତୀ ପିତାଙ୍କୁ ଜଣାଅ ।
ଯଥା ଜାଳେ ବିଭ ବୁଝି ଅମ୍ଭଙ୍କୁ ଜଣାଅ ॥

ଶୁଣି ସର୍ବାଣୀ ସଜନୀ ସଙ୍ଗତେ ଅଇଲେ ।
ପିତାଙ୍କ ଆଗେ ସକଳ ବୃତ୍ତାନ୍ତ କହିଲେ ॥

ଶୁଣି ଗିରିପତି ଅତି ଆନନ୍ଦିତ ହୋଇ ।
ହରଙ୍କୁ ବର ବରଣେ ନିମନ୍ତ୍ରଣ ଦେଇ ॥

ଶିବ ଶିବା ବିଭ ବଢ଼ାଇଲେ ସମାରୋହେ ।
ମିଳିତ ହୋଇ ବ୍ରହ୍ମାଦି ଦେବତା ସନ୍ଦୋହେ ॥

ସ୍ମାରକ ରକ୍ଷଣେ ସେହି ଦିନୁ ପ୍ରତି ବର୍ଷେ ।
ବିବାହ ଉତ୍ସବ ହୁଏ ଶିବାଳୟେ ହର୍ଷେ ॥

ଜ୍ୟେଷ୍ଠମାସ ଶୁକ୍ଳ ପକ୍ଷ ପଞ୍ଚମୀ ଯେ ତିଥି ।
ଲଡ଼ୁବାବାଙ୍କ ବିବାହ ଉତ୍ସବ ଏ ରୀତି ॥

ପୂର୍ବ ନିଶାରୁ ମଙ୍ଗଳ ହାଣ୍ଡିବସା ସିଦ୍ଧି ।
ଯାଇଥାଇ ନିମନ୍ତ୍ରଣ ଅଧିବାସ ବିଧି ॥

ପଞ୍ଚମୀ ରାତ୍ରିରେ ଦେବ ବିବାହ ବେଈରେ ।
ବୃଷରେ ଆସନ୍ତି ହଜ୍ଞ ଧୂପର ଶେଷରେ ॥

ଜାଳି ଦୋପଖା ମସାଲ ବଜାଇ ବାହବା ।
ଘେରି ଠାକୁର ଜାଣିବା ଜନେ ହୋନ୍ତି ଖଳି ॥

ନବାଳେ ଗଣ୍ଡ ମାଦଳ ଛତି ତ୍ରାସ ପଟେ ।
ଗୋଟିଏ ଚଅଁର ପଛେ ଆସନ୍ତି ନିଛାଟେ ॥

ବାପଘର ଭାବି ପୂର୍ବ ବ୍ରାହ୍ମଣ ଶାସନେ ।
ଭିଆଇଥାନ୍ତି ବିବିଧ ନୈବେଦ୍ୟ ବ୍ରାହ୍ମଣେ ॥

ନିଶାର୍ଦ୍ଧେ ସମୟେ ମହାପ୍ରଭୁ ଗୋପୀନାଥ ।
କନ୍ୟାପକ୍ଷେ ବରଧରି ଅସନ୍ତି ତ୍ୱରିତ ॥

ନିଜ ଶନାତନ ଘେନି ବନ୍ଧୁ ସମ୍ଭବେ ।
ଭୋଗ ଭୁଞ୍ଜି ବେନି ଦେବ ଫେରନ୍ତି ଗୌରବେ ॥

ମନ୍ଦିର ନିକଟ ନୀଳ ସରୋବର ତଟେ ।
ବନ୍ଧାବନ୍ଧି ହୋନ୍ତି ଲୋକେ ବରକନ୍ୟା ପଟେ ॥

ବର-କନ୍ୟାଙ୍କର କେତେ ପଡ଼ଇ ଦାୟିକା ।
ତ୍ରିଭୁବନେ ସାର ଯେହୁ ନାୟକ ନାୟିକା ॥
ତାଙ୍କ ଅବଗୁଣ କେହି କହିବ ହସାରେ ।
ବଢ଼େ ସେକାଗ୍ରରେ ବାଟ ବରଣ ସୁସାରେ ॥
ତହିଁ ମୁଷ୍ଟଶାଳା ବାସେ ବଢ଼େ ବିଭ ବିଧି ।
ପୁରୋହିତ ବେଦ ବାକ୍ୟ ବଦନ୍ତି ସନ୍ନିଧି ॥
ପଞ୍ଚଗ୍ରାସୀ ଏକାଧାରେ ଦମ୍ପତୀ ଆହାର ।
ସରନ୍ତି ପାହାନ୍ତି ହୁଏ ସେ ବଡ଼ ସଂହାର ॥
ଲଭିଯାଏ ଶାସନରେ କ୍ଷୀରୀ ପୁଳି ଖେଳି ।
ଭୁଞ୍ଜନ୍ତି ଘର ମିଣିପେ କୁଣିଆଙ୍କୁ ଖୋଜି ॥
ଏହିପରି ଶିବ ଦୁର୍ଗା ବିଭଘର ସରେ ।
ଶ୍ରୀ ଭଦ୍ରକେଶ ମହେଶ ଚିନ୍ତି ମାନସରେ ॥

## ଶିବ ଦମ୍ପତି ଦାୟିକା

ବର-ଆମ୍ଭର ଶଙ୍କର ବର ସକଳ ସଂସାର ସାର
ସୁନ୍ଦର ଚନ୍ଦ୍ରଶେଖର ପଞ୍ଚ ବଦନ
ଦେବଙ୍କ ଉପରେ ଦେବ ବ୍ୟୋମକେଶ ବାମଦେବ
ବୃଷଭ ବାହନ ଶିବ ଶୋଭେ ସଦନ
ଭୂତ ପ୍ରମଥଙ୍କ ନାୟକ
ସିଦ୍ଧ ସାଧକ ସନ୍ୟାସୀ ସୁଖ ଦାୟକ (୧)

କନ୍ୟା-କେତେ ଆଡ଼ମ୍ବର କରି କହୁଅଛ ପୁରଃ ସରି
ତୁମ୍ଭ ବରଙ୍କ ମାଧୁରୀ ଜାଣିଛୁ ଭଲେ
ଆମ୍ଭର କନ୍ୟା ପାର୍ବତୀ ସୁଲକ୍ଷଣା ରୂପବତୀ
ଜଗତୀରେ ମହାସତୀ ଅଛିକେ ତୁଲେ
ନାରୀକୁଳ ମଉଡ଼ମଣି
କେପାରିବ ମୁଖେ ତାହା ମହିମା ଭଣି (୨)

ବର-ତ୍ରିପୁର ପ୍ରଳୟ କାରୀ ସଦାଶିବ ତ୍ରିପୁରାରି
ନିଜର ପଣେ ଧିକ୍କାରୀ କହୁଛ ବାଣୀ
ବୁଝିଛୁ କନ୍ୟାର ଗୁଣ ପିତା ପର୍ବତ ପାଷାଣ
କୋପେ ଲୁହାଠାରୁ ଟାଣ ସିଂହେ ଭ୍ରମଣି
ନିଶା ଅର୍ଦ୍ଧେ ପଡ଼ିଲେ ଭେଟ
ନିଃସଂଶୟ ଆସି ତାର ମୃତ୍ୟୁ ନିକଟ (୩)

କନ୍ୟା-ପରମ ପ୍ରକୃତିମୟୀ କାତ୍ୟାୟନୀ ମହାମାୟୀ
ମଙ୍ଗଳା ମଙ୍ଗଳଦାୟୀ ହେମ ପିତୁଳା
ହର ବୁଢ଼ା ହଡ଼ା ଛଡ଼ା ଦରପୋଡ଼ା ସଢ଼ା ମଢ଼ା
ହାଡ଼ ମାଳ ଗଡ଼ା ଗଡ଼ା ଗରଳ ଗିଳା
ବିହି ଲିହି ଥିଲ କପାଳେ
ହାତଧରି ପଡ଼ିବାକୁ ଯୋଗିର ଥାଳେ (୪)

ବର-ବେଦବର ବିଶ୍ୱମ୍ଭର ସୁରା ସୁର ପୁରନ୍ଦର
ପୂଜା କରନ୍ତି ଯାହାର ଗନ୍ଧ ଚରଣ
କାହିଁ ଥିଲ ଦୁର୍ଗଦଣ୍ଡୀ ଭୟଙ୍କରୀ ରଣଚଣ୍ଡୀ
ବ୍ରହ୍ମାଣ୍ଡ ଦଇତ୍ୟ ଖଣ୍ଡୀ ନାହିଁ ଶରଣ
ଜାତି ଗୁଣ୍ଡି ଦିଅ ଝିଅକୁ
ଚଳଙ୍କ ଲଗାଇବାକୁ ଆମ୍ଭ ପୁଅକୁ (୫)

କନ୍ୟା-ଅଖିଳ ଲୋକ ବନ୍ଦିନୀ ହିମ ଶଇଳ ନନ୍ଦିନୀ
ଆଜନ୍ମ ତପସ୍ୱିନୀ ତୁ ଏ ଦୟିତ
ପରପଞ୍ଚ ପଞ୍ଚ ମୁଣ୍ଡ ଦଣ୍ଡଗୋଟା ଭୁଜଦଣ୍ଡ
କଳେବର ଶୀଳାଖଣ୍ଡ ବିରୂପ ନେତ୍ର
ଅର୍ଦ୍ଧ ଘଳ ହେଲେକି ବାଇ
ଏକମାତ୍ର କନ୍ୟାରତ୍ନ ଦେଲେ ଭସାଇ (୬)

ବର-ଅନାଦି ପରମେଶ୍ୱର ବନ୍ଦନ୍ତି ସଚରାଚର
ଭକତ କାମନା ପୂର କଳ୍ପତରୁ
ବେଳେ ନର ଶିରଃ ଶ୍ରେଣୀ କଟିରେ କର କିଙ୍କିଣୀ
କର୍ଣ୍ଣେ ଶବ ଯୁଗ ପୁଣି ଶୋଭେ କି ସ୍ତନୁ
ପୃଷ୍ଠେ ଲୁଟେ ମହୂଜା ବାଳ
ଏହିପରି କନ୍ୟା କାହିଁ ମହୀ ମଣ୍ଡଳ (୭)

କନ୍ୟା—ଲବଣୀ ପିତୁଳା ତୁଳା ଶିରିଷରୁ ସୁକୋମଳା
ଲଭରୀ ବୟସୀବାଳା ରମଣୀମଣି
ନାହିଁ ଯାର କୁଳମୂଳ ପାଇଁଷ ବେଳା ପାଗଳ
ଜଟା ଜୁଟୁଟି କୁଟିଳ ଭୂଷଣ ଫଣି
ବାଘଛାଲ ଖଣ୍ଡି ଆସନ
ତୋର କଲପୁନୀ ବିନା ଦିଗ ବସନ (୮)

ବର—ହିମାଳୟ ଦଣ୍ଡଧାରୀ ବର ଆମସଣେ ବରି
ଶାନ୍ତି ଦିଅନ୍ତି ତୁମରି ମୂର୍ଖ ମୁଖରେ
ଏକଥାରୁ ଉପମାନ ବଳଳା ଅଛିକି ଆନ
ବିଚାର କରତ ମନ ସୁଖ ଦୁଃଖରେ
ଲେଉଟିଣି ଯାଉଛୁଁ ଆମ୍ଭେ
ଅନ୍ୟ ବରେ ଦିଅ କନ୍ୟା ରତନ ତୁମ୍ଭେ (୯)

କନ୍ୟା—ଆସ ଆହେ ବରଯାତ୍ରି ତୁମ୍ଭ ଆମ୍ଭର ପୀରତି
ରହିଥାଉ ନିତି ନିତି ନୁହ ବିରାଗ
ବିବାହ କାଳେ ଏମନ୍ତ ପଡ଼ଇ ଭଙ୍ଗି ଉଦନ୍ତ
ବାଟ ବରଣେ ଆଗତ ହୁଅନ୍ତୁ ବେଗି
ବର କନ୍ୟା ହର ଗଉରୀ
ବିଧି ବିଧାନ ଅନ୍ୟଥା କେ କରି ପାରି (୧୦)

## ଶୀତଳ ଷଷ୍ଠୀ

ଉଗ୍ରେଶୋ ଧବଳେଶ୍ୱରଶ୍ଚ କପିଳଃ କ୍ଷୀରୀଳକଣ୍ଠେଶ୍ୱରଃ
ସିଂହେଶା ଗତିକେଶ୍ୱରଶ୍ଚ ମଧୁକଃ ଖାଇତ୍‌କେଶ ପ୍ରଭୁଃ
ଫୁଲ୍ଲେଶ ସ୍ତପି ସୋମନାଥ ଯୁଗଳୌ ମୁକ୍ତିଶ ଦୁତୀ ଶ୍ୱରୌ
ଭୂ ଭୂତା ନବଦୁର୍ଗ ମଣ୍ଡଳଗତାଃ ସ୍ୱାଦ୍ୱାଦଶାଃ ଶାମ୍ଭବଃ

ବିବାହର ପରଦିନ ଷଷ୍ଠୀ ନାମା ତିଥି ।
ନିଦାଘ କାଳେ ଶୀତଳା ଷଷ୍ଠୀ ସେହି ଗତି ।।

ନଗରୁଣ୍ଡ ସଞ୍ଚଧୂପ ଗ୍ରାମୁଁ ବାଇଁଶିଆ ।
ଆସନ୍ତି ଦ୍ୱିକେ ଉଖୁଡ଼ା ଭରି ବାଡ଼ିଶିଆ ।।

ବାରିକ ହାତେ ମସାଲ ଜଳାଇ ଅଗ୍ରେ ।
ଆଣି ରଖନ୍ତି ଉପାଧି ମୋହନ ଗୃହରେ ।।

ପଣ୍ଡାଏ ବସି ଠାକୁରେ ନୈବେଦ୍ୟ କରନ୍ତି ।
ଚଣ୍ଡ ଖୋଇ ଦେଇ ବିପ୍ରେ ଘରକୁ ଫେରନ୍ତି ।।

ଏ ଗତି ସଞ୍ଚ ଧୂପରେ ସର୍ବାଙ୍ଗ ପ୍ରସାଦ ।
ପାଆନ୍ତି ସେବକ ବର୍ଗେ ଅମୂଲ୍ୟ ସୁସ୍ୱାଦ ।।

ବିବିଧ ବ୍ୟଞ୍ଜନ ଖେଚରାନ୍ନ କ୍ଷୀରି ପିଠା ।
ଚତୁଃସମ ବଢ଼େ ସରିବାରୁ ବଣ୍ଟା ଦୁଣ୍ଡା ।।

ପୁରୁବରୁ ନିମନ୍ତ୍ରଣ କରାଯାଇ ଥାଇ ।
ଆସନ୍ତି ଦ୍ୱାଦଶ ଶମ୍ଭୁ ନବଦୁର୍ଗା ସାଇଁ ।।

ନିଜ ଶନାଚନ ସଙ୍ଗେ ଘେନାଇଁ ସ୍ୱଦ୍ୱାରେ ।
ଚାହିଁ ମଣ୍ଡପ ଉରରେ ଯାଚରା ପଦାରେ ।।

ହୁଅନ୍ତି ସେ ସୁଖ ଗନ୍ତି ମଧ୍ୟେ ସର୍ବେ ଠୁଳ ।
ଦିଶଇ ବିମାନ ମାନ ଅପୂର୍ବ ମଞ୍ଜୁଳ ।।

ବାଜୁଥାଏ ଘଣ୍ଟା ବାଦ୍ୟ ମଙ୍ଗଳ ମହୁରୀ ।
ଭେରୀ ତୁରୀ କାହାଳି ଯେ ଲେଳବାଳ ହୁରି ।।

କେତେ ମୂର୍ତ୍ତି ଛବି କରିଥାନ୍ତି ପ୍ରଦର୍ଶନୀ ।
ନାନା ବର୍ଣ୍ଣେ ବତୀ ଜଳେ ମସାଲ ରୋଷଣୀ ।।

ଠାକୁରଙ୍କ ଆଗେ ପଡ଼େ ଚାମର ଆଲଟ ।
ଗହଳିରେ ଛନ୍ତି ଦାସ ଓଲଟ ପାଲଟ ।।

ବିଜୟେ ଚନ୍ଦ୍ରଶେଖର ସାଟୋପେ ବୃଷଭେ ।
ମସ୍ତକେ ବିଜ ମୁକୁଟ ବାନ୍ଧି ଗଉରବେ ।।

ଚଉଦୋଳେ ଆସେ ଦୁର୍ଗା ଲଗାଇ ମୁକୁଟ ।
ମହିଷ ମର୍ଦ୍ଦିନୀ ବିଜେ ମୃଗରାଜ ପୃଷ୍ଠ ।।

ଯୁଗଳ ରାଧିକା କୃଷ୍ଣ ବିଜେ ତାମଯାନେ ।
ଗୋପୀନାଥ ଲକ୍ଷ୍ମୀ ନାରାୟଣ ପୁରିମାନେ ।।

ଆଗନ୍ତୁକ ଦେବ ଦେବୀ କେବା ଚଉଦୋଳେ ।
କିଏ ପାଲିଙ୍କିରେ ବିଜେ କିଏ ବା ହାଦୋଳେ ।।

ସରଗ ମର୍ତ୍ତ୍ୟ ପାତାଳ ତିନିପୁର ଶୋଭା ।
ଛିଡ଼ିକି ପଡ଼ିଛି ଦେଖି କେ ନୋହିବ ଲୋଭ ॥

ଜାଳୁଥାନ୍ତି ଚନ୍ଦ୍ରଦୀପ ଛାଡ଼ୁଥାନ୍ତି ବାଣ ।
ଚେଙ୍ଗ ଚକ୍ର କୁମ୍ଭ ଫୁଟେ ଗଛ ବାଣ ଟାଣ ॥

ଠାକୁରଙ୍କ ଆଗେ କେତେ ନାଟୁଆ ପାଇକ ।
ନାଚୁଥାନ୍ତି ଧରି ଇଟ ବାଡ଼ି ଫରି ଠିକ ॥

ରଜାରଣୀ ସାପୁଆଣୀ ସାପୁଆ ଦି ଯୋଡ଼ା ।
କେତେ ତଉଳେ ନାଚନ୍ତି ନାଗା କଳ ଘୋଡ଼ା ॥

ଏହି ପଟୁଆରେ ଯାଇ ବସନ୍ତି ଭଡ଼ିରେ ।
ଯେ ଯାହା ଆସନେ ପ୍ରଭୁ ଗୋଟିଏ ଧାଡ଼ିରେ ॥

ଯାତର ପଦାରେ କେତେ ହେଉଥାଇ ନାଟ ।
ଦେଖୁଥାନ୍ତି ଲୋକେ ସୁଖେ ମାରିଣ କୁହାଟ ॥

ଏମନ୍ତ ପ୍ରକାରେ ଗର୍ଭ ଷଷ୍ଠୀ ଯାତ୍ରା ଶେଷ ।
ଏଣେ ବଡ଼ ସିଂହାରପେ ହାତ ଅବକାଶ ॥

ଜଗତେ ରତ୍ନ ମଣ୍ଡପେ ଷୋଡ଼ଶୋପଚାରେ ।
ପଣ୍ଡାଏ ପୂଜା କରନ୍ତି ବସି ସଦାଚାରେ ॥

ନାନାବିଧ ନଇବେଦ୍ୟ ଦିଅନ୍ତେ ସେଠାରୁ ।
ଉଠନ୍ତି ସର୍ବ ଦେବତା ଭଡ଼ିର ପଟାରୁ ॥

ନିଜ ଛିଟିଣାକି ଯୋଗ ଚଳଇ ଆଗରେ ।
ଗ୍ରାମ ଭ୍ରମଣି କରନ୍ତି ବହୁ ସରଗରେ ॥

ଶାସନ ବାହାର ପଦା ସେ ଛାୟା ମଣ୍ଡପ ।
ତହିଁ ଭଲ ବିମାନରେ ବଢ଼େ ଠିଆ ଧୂପ ॥

ଆରତି ସରନ୍ତେ ପ୍ରଭୁ ବାହୁଡ଼ା ବିଜୟେ ।
ଛାଛାମୁରେ ପୂର୍ବ ପଟୁଆର ପଡ଼ିଥାଏ ॥

ଶାସନୀ ଦୁଆର ଭୋଗ ବିବିଧ ବିଧିରେ ।
ନଇବେଦ୍ୟ ପାଇ ଦେବ ପ୍ରବେଶ ମନ୍ଦିରେ ॥

ମୁଖଶାଳାରେ ପଡ଼ଇ ଅନେକ ଆସନ ।
କରନ୍ତି ଠାକୁରେ ତହିଁରେ ଉପବେଶନ ॥

ଶଂଖମଲ ଚଉକିରେ ସ୍ୱର୍ଣ୍ଣ ସିଂହାସନେ ।
ବିଜୟେ ଚନ୍ଦ୍ରଶେଖର ପ୍ରତିମା ପ୍ରସନେ ॥

ପାର୍ଶ୍ୱେ ପାର୍ବତୀ ଦେବୀ ଅନ୍ୟାନ୍ୟ ଦେବତା ।
ଯେମନ୍ତ ପସନ୍ଦ ଦିଶେ କହି ନୋହି ବତା ॥

ପ୍ରଥମରେ ମନ୍ତ୍ର ସ୍ନାନ ବିଧି ଆଚରନ୍ତି ।
ତାପରେ ପୁଷ୍ପ ଚନ୍ଦନେ ଅର୍ଚ୍ଚନା କରନ୍ତି ॥

ଆଗେ ବଢ଼ାଯାଏ ଖଜା ପିଠା ପନ୍ତି ଭୋଗ ।
ପାଳୁଅ ଗହମ କ୍ଷୀରୀ ଦହି ଧୂଆ ମୁଗ ॥

ପଣସ କଦଳୀ ଛେନା ଖଣ୍ଡ ଖଇ ।
କମଳା ନାରଙ୍ଗ ଦ୍ୟନ୍ତି ପଇଡ଼ ଛିଆଇ ॥

ପାଟଚର ବାଡ଼ ଧରି ଥାଏ ପଡ଼ିହାରୀ ।
ପରୀକ୍ଷକ ଉଭକରେ ଧରି ଛଡ଼ି ବାଡ଼ି ॥

ବାଜଇ କାହାଳ ଘଣ୍ଟା ପ୍ରତିଯୋଗିତାରେ ।
ପଣ୍ଡାଏ ପୂଜା କରନ୍ତି ଷୋଡ଼ଶୋପଚାରେ ॥

ଦୂର୍ବାକ୍ଷତ ଆରତ୍ରୀକ ବନ୍ଦାପନା ଶେଷେ ।
ଚନ୍ଦନ ପ୍ରସାଦ ଦ୍ୟନ୍ତି ଦରଶକେ ଲେଶେ ॥

ତହୁଁ ଠାକୁରେ ଯାଆନ୍ତି ଆପଣା ନିବାସେ ।
ନିଅନ୍ତି ସେବକେ ଯେଝା ପୂଜା ବାର୍ଦ୍ଧି ବାସେ ॥

ବାହର ବଜାରେ କେତେ ବାସନ କୁସନ ।
ଉଖୁଡ଼ା ଭୁଜା ପରିବା ତାମ୍ବୁଳ ବସନ ॥

ବିକା କିଣା ଲାଗିଥାଇ ପହଞ୍ଚି ଗ୍ରାହକେ ।
ପଇସା ପତ୍ର ଦିଅନ୍ତି ଦ୍ରବ୍ୟ ନେଇ ହକେ ॥

ଏହି ପ୍ରକାରେ ଶୀତଳ ଷଷ୍ଠୀ ଯାତ୍ରା ସରେ ।
ବାବାଙ୍କ ଦୟାରେ ପଦ ହୃଦୟେ ପ୍ରସରେ ॥

## ଚତୁର୍ଥୀ ଯାତ୍ରା

ବିବାହର ଚାରିଦିନେ ପଡ଼ଇ ଚଉଠୀ ।
ସନ୍ଧ୍ୟାବେଳୁ ଗୋପୀନାଥେ ନିଜ ସ୍ଥାନୁ ଉଠି ॥

ଚନ୍ଦ୍ରଶେଖର ବିବାହ ଦିନ ଯେଉଁପରି ।
ଆସନ୍ତି ଆଜି ଏ ବିଜେ ହୁଅନ୍ତିଟି ଘେରି ॥

ବିଭା ମଣ୍ଡପେ ବସନ୍ତି ବ୍ରାହ୍ମଣ ଶାସନ ।
ତାପରେ ସଙ୍ଗେ ଘେନାଇଁ ନିଜ ସନାତନେ ॥

ଚନ୍ଦ୍ରଶେଖର ପାର୍ବତୀ ବିଜେ ବିମାନରେ ।
ଉମା ମହେଶ ଅରୋହୀ ବୃଷଭ ବାହନରେ ॥

ଚାହାଁଳି ଧୂପ ସାରି ବିଭାମଣ୍ଡପରେ ଧୂପ ।
ବନ୍ଦେ ଦ୍ୱାର ପୂଜା ବିଭାଦିନ ଅନୁରୂପ ॥

ତାପରେ ଯାନ୍ତି ମନ୍ଦିରେ ବିଜେ ମୁଖଶାଳେ ।
ଚତୁର୍ଥୀ କର୍ମ ପୁରୋଧା କରନ୍ତି ଏକାଳେ ॥

ତହୁଁ ସନ୍ଧ ଧୂପ ଠାରୁ ବନ୍ଦେ ସବୁ ନୀତି ।
ଏମନ୍ତେ ଚତୁର୍ଥୀ ଯାତ୍ରା ବିଧି ସମାପତି ॥

## ସାତ ମଙ୍ଗଳା

ସପତ ମଙ୍ଗଳା ବିବାହର ସାତଦିନେ ।
ଚନ୍ଦ୍ରଶେଖର ପାର୍ବତୀ ଗୋଟିଏ ବିମାନେ ॥

ଆରୋହି ସଞ୍ଜରୁ ଚାହାଁଳି ଧୂପକୁ ବଢ଼ାଇ ।
ବାଉଁଶିଆ ବୁଲିଯାନ୍ତି ବାଟକୁ ବଢ଼ାଇ ॥

କରନ୍ତି ନାଟ ବ୍ରାହ୍ମଣେ ମାରୁଥାନ୍ତି ବାଣ ।
ବହୁ ଜନ ମୁଖ କୋଳାହଳ ଶୁଭେ ଟାଣ ॥

ସେ ଶାସନ ଉପକଣ୍ଠେ ଦେବ ଯଜ୍ଞେଶ୍ୱର ।
ତହିଁକି ଯାନ୍ତି ପାର୍ବତୀ ଶ୍ରୀଚନ୍ଦ୍ରଶେଖର ॥

ତହିଁ କୋଠ ପନ୍ତି ଭେଟ ପାନ୍ତି ଦ୍ୱାର ପୂଜା ।
ଆସନ୍ତି ସମ୍ଭ୍ରବରେ ବଜାଇଣ ବାଜା ॥

ଶାସନେ ଶରଣକୁଳେ ଦ୍ୱାର ପୂଜା ଶେଷ ।
ଭବ ଭବାନୀ ଯୁଗଳ ମନ୍ଦିରେ ପ୍ରବେଶ ॥

ସେଠାରୁ ସନ୍ଧ ଧୂପରୁ ବନ୍ଦେ ସବୁ ନୀତି ।
ଏସନେ ସାତ ମଙ୍ଗଳା ଯାତ୍ରା ସମାପତି ॥

## ଛାଡ଼ଖାଇ (ଯମ ଦ୍ୱିତୀୟା) ଯାତ୍ରା

ମାର୍ଗଶୀର କୃଷ୍ଣ ପକ୍ଷ ତିଥି ଯେ ଦ୍ୱିତୀୟା ।
ଏଦିନ ଲିଙ୍ଗ ବାବାଙ୍କ ଯାତ୍ରା ଛାଡ଼ଖିଆ ॥

ପୂର୍ବ କାଳେ ପହଞ୍ଚି ରଜାଙ୍କ ଦରବାର ।
କହିଲେ କାର୍ତ୍ତିକ ମାସ ଶେଷକୁ ପରଜା ॥

ଆଜ୍ଞା ଏମାସେ ହବିଷ୍ୟ ଛାଡ଼ ବହୁ ଖାଦ୍ୟ ।
ଏଥିପାଇଁ ଶାସ୍ତ୍ରରେ କରନ୍ତୁ ବାଧ୍ୟ ॥

ଦ୍ୱିତୀୟା ଦିନ ଯାତରା ଛାଡ଼ ଖାଇ ହେବ ।
ଯମ ଦ୍ୱିତୀୟା ନାମରେ ବୋଲାଇ ଲୋଡ଼େବ ॥

ପବିତ୍ର ଭାବେ ଗୁଡ଼ିଆ ସଜାଇ ଦୋକାନେ ।
ବିକିବେ ସ୍ୱାଦୁ ପଦାର୍ଥ ଖାଇ ଆମେମାନେ ॥

ଭଲ ମାସକର ମନ ସଧ ମେଣ୍ଟାଇବୁଁ ।
ଘରକୁ ପନି ପରିବା ଘେନି ପଶାଇବୁଁ ॥

ସନ୍ତୁଷ୍ଟ ହୋଇବୁଁ ଅନ୍ନ ବ୍ୟଞ୍ଜନ ଭୋଜନେ ।
ଏହି ଆଜ୍ଞା ଦିଆଯାଉ ମନ୍ଦିରେ ରାଜନେ ॥

ଏହା ଶୁଣି ହସି ହସି କହିଲେକ ରଜା ।
ନିଶ୍ଚୟ ତୁମ୍ଭରି କଥା କରିବୁ ପରଜା ॥

ଆଦେଶ ହେଲା ମନ୍ଦିରେ ରାଜ ଦରବାରେ ।
ଦ୍ୱିତୀୟାରେ ଛାଡ଼ଖାଇ ଯାତ୍ରା କର ବାରେ ॥

ରାଜାଜ୍ଞାରେ ସେହି ଦିନୁ ହେଉଛି ଯାତରା ।
ବର୍ଷକୁ ବର୍ଷ ବଢ଼ଇ ତାହାର ମାତରା ॥

ଏ ଦିନ ଭଗତଙ୍କାଳୁଁ ରକ୍ତି ଶେଷ ଯାଏଁ ।
ଜଳେ ଅଖଣ୍ଡଳ ଘୃତ ଦୀପ ରଜା ନାଏଁ ॥

ସକାଳ ଧୂପ ବଢ଼ଇ ଅତି ତତ୍କାଳ ।
ଦର୍ଶନ କରନ୍ତି ଯାତ୍ରୀ ମିଳି ମାଳ ମାଳ ॥

ଆସନ୍ତି ଅନେକ ଲୋକ ମାଇପୀ ପିଲାଏ ।
ବେଢ଼ା ବାହାରେ ବିବିଧ ଦ୍ରବ୍ୟ ବିକାଯାଏ ॥

ଅପରାହ୍ନ ସମୟକୁ ବେଢ଼ା ପରିକ୍ରମା ।
ଦେଖିବାକୁ ବହୁ ଲୋକ ହୋଇଯାନ୍ତି ଜମା ॥
ଦକ୍ଷିଣଦ୍ୱାରେ ଆସନ୍ତି ଘେନି କୁତୂହଳେ ।
ସୁବେଶେ ଚନ୍ଦ୍ରଶେଖର ବିଜେ ଚଳଦୋଳେ ॥
ଟେକା ହୋଇଥାଏ ଛତି ଛାଯ ବାନା କେତେ ।
ପଢ଼େ ଆଲଟ ଚଅଁର ଛାମୁରେ ନୀରବେ ॥
ବାଜଇ ଘଣ୍ଟ କାହାଳ ବାଜାକି ଯତନ ।
ତାହା ସହିତ ମିଶଇ ନାମ ସଂକୀର୍ତ୍ତନ ॥
ମୁଲକି ଉଠଇ ଛାତି ଅତି ଉଲ୍ଲାସରେ ।
ରବି ଅସ୍ତ ସମୟକୁ ବେଢ଼ା ବୁଲ ସରେ ॥
ଚହୁଁ ଠାକୁର ଯାଆନ୍ତି ମନ୍ଦିର ଭିତରେ ।
ବେଢ଼ା ଧୂପ ଆଦି ସବୁ ବଢ଼େ ତରତରେ ॥
ଖୋଳ ତାଳ ଧରି କେତେ ନାମ ସଂକୀର୍ତ୍ତନ ।
ଘେନି ଏକନଖୀ ବାନା ବୈରଖ ନିଶାଣ ॥
ବେଢ଼ା ମଧ୍ୟରେ ବସନ୍ତି କୀର୍ତ୍ତନ ମଣ୍ଡଳ ।
ବଜାଉଥାନ୍ତି ନିଶାର୍ଦ୍ଧ ଯାଏ ତାଳ ଖୋଳ ॥
ତାଙ୍କ ସଙ୍ଗତେ ଗାୟକମାନେ ଆସିଥାନ୍ତି ।
ଗୋଟିଏ ଦୁଇଟି କରି ଗୀତକୁ ଗାଆନ୍ତି ॥
ଦୁଇ ତିନି ଦିନ ଯାଏଁ ଯାତରା ରହଇ ।
ଦୋକାନୀ ଜିନିଷ ବିକା କିଣା ଲଗିଥାଇ ॥
ଏହି ରୂପେ ଛାଡ଼ଖାଇ ଯାତ୍ରା ସମାପତି ।
ଶ୍ରୀ ଲଡ଼ୁକେଶ ଚରଣେ ସଦା ଥାଉ ମତି ॥

## ଦଶହରା

ଶୁକ୍ଳପକ୍ଷ ଦଶମୀ ଆଶ୍ୱିନ ମାସର ।
ମହାଃ ଦୁଃଖହା ଅପରାଜିତା ସେ ବାସର ॥
ସକଳ ଲୋକରେ ପରିଚିତା ଦଶହରା ।
ହିନ୍ଦୁ ଧର୍ମାବଲମ୍ବୀଙ୍କ ଅନୁକୂଳ ପରା ॥

ରୁଚିର ତର ଶରଦ ଋତୁ ଅଧା ଲାଗେ ।
ପୁଷ୍ପବାସ ଘେନି ବାତ ବହେ ଶୁଭଯୋଗେ ॥
ବିମଳ ନଭେ ମଣ୍ଡଳ ଉଦେ ଚନ୍ଦ୍ର ତାରା ।
ଶୁଷ୍କ ପୃଥିବୀ ନପଡ଼େ ସେତେ ଜଳଧାର ॥
ଏଥି ପୂର୍ବରୁ ଅଶ୍ୱୀତ ପକ୍ଷ ସପତମୀ ।
ଦେବୀ ପର୍ବ ଅଧିବାସ ଯାଇ ଥାଇ ରମି ॥
ତାପର ଅଷ୍ଟମୀ ତିଥିଠାରୁ ଷୋଳ ଦିନ ।
ଦୁର୍ଗୋତ୍ସବ ରତ ଥାଇ ପଜା ବିସର୍ଜନ ॥
ବାବାଙ୍କ ବେଢ଼ାରେ ଛତି ଦେବୀ ନାରାୟଣୀ ।
ଇଶାନ କୋଣ ପ୍ରାସାଦେ ଭକ୍ତ ପରାୟଣୀ ॥
ଡାଳ ପତ୍ର ଘର ଛାମୁଣ୍ଡିଆ ଖଣ୍ଡାଦାରେ ।
କରିଥାନ୍ତି ପର୍ବ ଲାଗି ମନ୍ଦିର ବାହାରେ ॥
ମୂଳାଷ୍ଟମୀରେ ସହସ୍ର କୁମ୍ଭ ଅଭିଷେକ ।
ହୁଅନ୍ତି ମୂଳ ମତରେ ଡାକନ୍ତି ପୂଜକ ॥
ପ୍ରଭାତ ମଧ୍ୟାହ୍ନ ସନ୍ଧ୍ୟା ତ୍ରିକାଳରେ ଧୂପ ।
ହୁଅଇ ସଂଖୁଡ଼ି ନିଃସଂଖୁଡ଼ି ବହୁ ରୂପ ॥
ବଢ଼ିଲେ ବଳଇ ଚଣ୍ଡୀ ସ୍ତୋତ୍ର ପାଠ ହୁଏ ।
ହୁଅନ୍ତି ଖଟଣି ଲାଗି ସମୟେ ସମୟେ ॥
ପୂର୍ବାହ୍ନେ ସଂଖୁଡ଼ି ଧୂପ ମଧ୍ୟାହ୍ନେ ଝାଲେରି ।
ସନ୍ଧ୍ୟାରେ ଭ୍ରମଣ କରି ଯାନ୍ତି ମାହେଶ୍ୱରୀ ॥
ବିମାନ ଆରୋହୀ ଦେବୀ ବିଜୟ ପ୍ରତିମା ।
ଦିନେ ଦିନେ ବଢ଼ି ବଢ଼ି ଯାନ୍ତି ଗ୍ରାମସୀମା ॥
ବାଜଇ ଘଣ୍ଟ ମାଦଳ କାହାଳ ସ୍ୱରରେ ।
ଛତି ଛାସ ବାନା ଟେକା ହୁଅଇ ଆଗରେ ॥
ଫେରିଲେ ଭ୍ରମଣି ସାରି ଦେବୀ ଭଗବତୀ ।
ସନ୍ଧ୍ୟା ଧୂପ ବଢ଼େ ତାକୁ ବୋଲନ୍ତି ଜଗତୀ ॥
ଏହିପରି ସବେ ହେଲେ ଅଷ୍ଟ ଦିନ ଭୋଗ ।
ଦେବୀଙ୍କ ମନ୍ଦିରେ ଗ୍ରାମ ଦେବୀଙ୍କ ସଂଯୋଗ ॥

ଝାଡ଼େଶ୍ୱରୀ, ରାମଚଣ୍ଡୀ, ବିରଜା ବାଉଳୀ ।
ସକଳେ ମିଳି ଚଳାନ୍ତି ପରବ ଖାଉଣ୍ଡି ॥
ଶୁକ୍ଳ ଷଷ୍ଠୀଠାବରୁ ଅଷ୍ଟମୀର ଯାଏ ।
ଦେବୀଙ୍କ ଘୋଅଡ଼ ପର୍ବ ତିନି ଦିନ ହୁଏ ॥
ବହୁ ଭୋଗ ରାଗ ପୂଜା ହୁଏ ପୋଥିବସା ।
ବସନ ଭୂଷଣେ ଦେବୀ ହୁଅନ୍ତି ସୁବେଶା ॥
ବାବାଙ୍କ ଦୁଇ ପହରି ଧୂପଟି ବଢ଼ନ୍ତେ ।
ହୁଅଇ ଦେବୀଙ୍କ ପର୍ବ କବାଟ ପଡ଼ନ୍ତେ ॥
ଆମିଷ ନାନା ବ୍ୟଞ୍ଜନ ଅନ୍ନ ଶାଗ ଭଜା ।
ପୂଜା ହୁଏ କେତେ ଦ୍ରବ୍ୟ କ୍ଷୀରୀ ପିଠା ଖଜା ॥
ମହାଷ୍ଟମୀ ନିଶୀ ସନ୍ଧି ପୂଜା ପଶୁବଳି ।
ମହାନବମୀରେ କରଯାଏ ଏହିଭଳି ॥
ବରଷେ ବରଷେ ଦିନେ ପଡ଼ଇ ବିଶ୍ରାମ ।
ଅଧିକା ଦିବସେ ଦେବୀ ଲଭନ୍ତି ଆରାମ ॥
ବାସୀ ଦଶହରା ଦିନ ବିଜୟ ମୂହୂର୍ତ୍ତେ ।
ବାହାରନ୍ତି ମନ୍ଦିରର ଦେବତା ସମସ୍ତେ ॥
ଯେ ଯାହା ଯାନ ବାହନେ ବଡ଼ ପଟୁଆରେ ।
ମିଳନ୍ତି ଶାସନ ଲଂଘି ଯାତରା ପଦାରେ ॥
ଶ୍ରୀ ଛାମୁରେ କରଯାଏ କେତେ ଗୀତ ନୃତ୍ୟ ।
ଛତିଶ ନିଯୋଗ ଲାଗି ରହିଥାନ୍ତି ଭୃତ୍ୟ ॥
ଦରଶନେ ଠାକୁରଙ୍କୁ ହୃଦୟ ପୁଲକେ ।
ସେହି ତାହାର ଉପମା ମହୀରେ ତ୍ରିଲୋକେ ॥
ଲେଉଟାଣି ଦ୍ୱାର ପୂଜା ବିଧିକି ବଢ଼ାଇ ।
ସରବେ ଦେବେ ପ୍ରବେଶ ଦେଉଳରେ ଯାଇ ॥
ଏମନ୍ତେ ଠାକୁର ଦଶହରା ଯାତ୍ରା ସରେ ।
ବାବାଙ୍କ ଦୟାରେ ପଦ ହୃଦରେ ପ୍ରସରେ ॥

## ଝୁଲଣ ଯାତ୍ରା

ଶୁକ୍ଳ ପକ୍ଷ ଦଶମୀ ଯେ ଶ୍ରାବଣ ମାସ ।
ଏ ଦିନ ହୁଏ ଝୁଲଣ ଯାତ୍ରା ଅଧିବାସ ॥
ବାସି ଏକାଦଶୀ ଦିନ ଠାରୁ ପୌର୍ଣ୍ଣମାସୀ ।
ଠାକୁର ଝୁଲଣ ଯାତ୍ରା ପାଞ୍ଚଗୋଟି ନିଶୀ ॥
କରନ୍ତି ଝୁଲଣ କୁଞ୍ଜ ନୃତ୍ୟ ମଣ୍ଡପରେ ।
ମଣ୍ଡିତ କାଗଜ ଫୁଲେ ବିବିଧ ରୂପରେ ॥
କେତେ ତାଳି ଚିତ୍ର କନ୍ତୁ ପକ୍ଷୀ ସଖୀଗଣ ।
ଜଳଜୀବ ଛବି ଶୋଭା ଝୁଲଣ ପ୍ରାଙ୍ଗଣ ॥
ଶ୍ରୀ ଗୋପୀନାଥ ପ୍ରତିମା ଚତୁଃ ସମ ଶେଷେ ।
ବିଜୟ ଝୁଲଣ କୁଞ୍ଜେ ଶ୍ରୀଅଙ୍ଗ ସୁବେଶେ ॥
ପ୍ରଜନଭାବେ ସେବକେ ଝଲନ୍ତି ନିକୁଞ୍ଜ ।
ଦିଶୁଥାଇ କିବା ନାଚୁଛନ୍ତି ଚିତ୍ର ପୁଞ୍ଜ ॥
କେତେ ମତେ ଗୀତ ନୃତ୍ୟ ଲାଗିଥାଇ ଆଗେ ।
ନିଃସଂଖୁଡ଼ି ଅଚ୍ଛଣିଆ ବଢ଼ଇ ସରାଗେ ॥
ତାପରେ ବାହୁଡ଼ି ଦିଅଁ ଗମ୍ଭୀରା ବିଜୟେ ।
ନିତି ରତି ଏହି ରୀତି ଯାତ ଲାଗିଥାଏ ॥
ଝୁଲଣ ଯାତରା କଥା ଏହିଠାରେ ଶେଷ ।
ଦରିଦ୍ରରେ ଦୟାକର ଦେବ ଲିଙ୍ଗରାଜ ॥

## ହରି ଜନ୍ମାଷ୍ଟମୀ

ହରି ଜନ୍ମାଷ୍ଟମୀ କୃଷ୍ଣ ପକ୍ଷ ଭାଦ୍ର ମାସେ ।
ବରଷା ଋତୁରେ ବାରେ ବରଷକେ ଆସେ ॥
ରୋହିଣୀ ନକ୍ଷତ୍ର ଯୁକ୍ତ ହେଲେ ବୁଧବାର ।
ସ୍ୱାର୍ଥ ସନ୍ତାନମାନଙ୍କ ଉପବାସ ସାର ॥
ନାରୀ ସରପିଣୀ, ନର ଯେ ଭ୍ରଷ୍ଟ ରାକ୍ଷସ ।
ପର ଜନ୍ମେ ହୁଏ ନ କରିଲେ ଉପବାସ ॥
ହରିହର ମୂର୍ତ୍ତି ଯେଣୁ ଶ୍ରୀ ଲିଙ୍ଗରାଜେଶ୍ୱର ।
ମନ୍ଦିରେ ବ୍ରତ ହୁଅଇ ତେଣୁ ଏ ବାସର ॥
ସନ୍ଧ୍ୟାବେଳୁ ପୁରୋହିତେ ଶ୍ରୀମୁଖ ଦେଉଳେ ।
ପଞ୍ଚ ମୂର୍ତ୍ତିଙ୍କେ ମଣ୍ଡଳ କାଟନ୍ତି ତଉଳେ ॥

ବାଳ ମୁକୁନ୍ଦ ମୂରତି ପିଣ୍ଡିକାକୁ ଆଣି ।
ବ୍ରତ ବିଧାନ କରନ୍ତି ନିଶା ଅର୍ଦ୍ଧ ଜାଣି ॥

ଗଣ୍ଡି ଖଜା ଆଦି ନାନାବିଧ ନଇବେଦ୍ୟ ।
ଅର୍ଚ୍ଚନା କରନ୍ତି ଭକତିରେ ଯଥାସାଧ୍ୟେ ॥

ମଣ୍ଡପେ ଦେବତା ପରଦିନ ସନ୍ଧ ଯାଏଁ ।
କବାଟ ପାଡ଼ି ଘୋଡ଼ାଇ ରଖା ଯାଇଥାଏ ॥

ବାସି ଦିନ ନବମୀରେ ନନ୍ଦ ମହୋତ୍ସବ ।
ଉପବାସ ଆଚରନ୍ତି ପରମାର୍ଥୀ ସର୍ବ ॥

ସନ୍ଧ ବେଳେ ଗୋପୀନାଥ ଠାକୁରେ ବିମାନେ ।
ଭ୍ରମଣି କରନ୍ତି ସଙ୍ଗେ ଘେନି ସନାତନେ ॥

ଶରଣକୁଳେ ଶାସନେ ଘରି ଭୋଗ ଶେଷେ ।
ଦ୍ୱାର ପୂଜାସାରି ମୁଖଶାଳେ ପରବେଶେ ॥

ଘର ଭଉଣି ଆଟିକା ମଣ୍ଡଳେ ଲଗାଡ଼ି ।
ପ୍ରସାଦ ପାନ୍ତି ସେବକେ ପଡ଼ନ୍ତେ ଛିଆଡ଼ି ॥

ଚତୁର୍ଦ୍ଧା ଦେବତା ରହନ୍ତି ଯାଇ ନିଜ ସ୍ଥାନ ।
ଏହିପରି ଜନ୍ମାଷ୍ଟମୀ ଯାତ୍ରା ସମାଧାନ ॥

## କାର୍ତ୍ତିକ ପଞ୍ଚକ

ବରଷକେ ପୁଣ୍ୟ ମାସ ଅଟଇ କାର୍ତ୍ତିକ ।
ହବିଷ୍ୟ କରନ୍ତି ରାଣ୍ଡୀ ବ୍ରାହ୍ମଣୀ ଯେତେକ ॥

କେତେକ ପୁରୁଷ ମଧ୍ୟ ବ୍ରତ ଆଚରନ୍ତି ।
ନକ୍ତ କାଳେ ଏକବାର ଭୋଜନ କରନ୍ତି ॥

ମଇଥୁନ ତେଲ ମତ୍ସ୍ୟ ମାଂସାଦି ବର୍ଜନ ।
କରନ୍ତି ବ୍ରତିଏ ସାଧୁ ସନ୍ଥ ସୁଧୀ ଜନ ॥

ପ୍ରାତଃ ସ୍ନାନ ଦେବାର୍ଚ୍ଚନ ତୁଳସୀ ସେବନ ।
ଆକାଶ ବାଉଁଶେ ସନ୍ଧ୍ୟା କାଳେ ଦୀପଦାନ ॥

ଏହିପରି ଗତ ହୁଏ କ୍ରମେ ଦିନୁ ଦିନ ।
ଶରଦ ଋତୁର ରାତ୍ରି ବୃଦ୍ଧି ଦିନ ହୀନ ॥

ପରେ ଅମାବାସ୍ୟା ପଯା ଶ୍ରାଦ୍ଧ ଦୀପଦାନ ।
ବଡ଼ କଢ଼ିଆ ଡାକନ୍ତି ଗ୍ରାମ ଲୋକମାନ ॥

ବାବାଙ୍କ ମନ୍ଦିରେ ବେଢ଼ା ଭିତରେ ବାହାରେ ।
ଜଳୁ ଥାଇ ଦୀପ ମାଳା କେତେ ଚମତ୍କାରେ ॥

ସେଠାରୁ ଶୁକ୍ଳ ପକ୍ଷ ବଡ଼ ଏକାଦଶୀ ।
ଉଠନ୍ତି ଶ୍ରୀହରି ଶେଜ ତେଜି ଏହି ନିଶି ॥

ଆଷାଢ଼ ଶୁକ୍ଳ ଏକାଦଶୀ ଦିନଠାରୁ ।
ପହୁଡ଼ ଛାଡ଼ନ୍ତି ଆଜି ପଲଙ୍କ ପଠାରୁ ॥

ଆଜିଠାରୁ ପାଞ୍ଚ ଦିନଯାଏ ପୌର୍ଣ୍ଣମାସୀ ।
ପଞ୍ଚକ ପୁଣ୍ୟ ଦିବସ ସର୍ବ ଶାସ୍ତ୍ରେ ଭଣି ॥

କାର୍ତ୍ତିକ ଆଦ୍ୟରୁ ଯେଉଁ ମାନେ ନପାରନ୍ତି ।
ଏ ପଞ୍ଚକ ପାଞ୍ଚ ଦିନ ହବିଷ୍ୟ କରନ୍ତି ॥

ପୁରାଣ ପ୍ରବାଦ ଅଛି ପୁଣ୍ୟ ଫଳ ପ୍ରାପ୍ତି ।
ପାପ ତାପ ନାଶ ଯାଏ ଅନ୍ତେ ସ୍ୱର୍ଗ ଗତି ॥

ପଞ୍ଚକରେ ଯେଉଁ ଜନ ଭୁଞ୍ଜଇ ଆମିଷ ।
ଇହକାଳେ ବହୁ ବ୍ୟାଧି ଅନ୍ତେ ନର୍କବାସ ॥

ବକପକ୍ଷୀ ପାଞ୍ଚ ଦିନ ନଭକ୍ଷଇ ମୀନ ।
ବକ ପଞ୍ଚକ ବୋଲନ୍ତି ତେଣୁ ସର୍ବଜନ ॥

ପୂର୍ବେ ଭୀଷ୍ମଦେବ ଆଚରିଲେ ଏହି ବ୍ରତ ।
ଭୀଷ୍ମ ପଞ୍ଚକ ନାମରେ ହୋଇଲା ବିଦିତ ॥

ବାବାଙ୍କ ମନ୍ଦିରେ ବ୍ରତ ଧରନ୍ତି ପାଳନ ।
ମାସ ଆରମ୍ଭରୁ ବୃନ୍ଦାବତୀ ଆରାଧନ ॥

ସକାଳ ଧୂପର ପରେ ଦାମୋଦର ଧୂପ ।
ଜଳେ ଆକାଶ ବାଉଁଶେ ସନ୍ଧ୍ୟେ ଘୃତ ଦୀପ ॥

ବେଢ଼ାର ଉତ୍ତର ଘରେ ଛନ୍ତି ଜଗନ୍ନାଥେ ।
ଭଉଣୀ ସୁଭଦ୍ରା ଭାଇ ବଳଭଦ୍ର ସାଥେ ॥

ପଞ୍ଚକ ପଞ୍ଚ ଦିବସ ପ୍ରତ୍ୟହ ସନ୍ଧରେ ।
ବସନ ଭୂଷଣେ ବେଶ ହୁଅନ୍ତି ଖଣ୍ଡରେ ॥

ଗିରି ଗୋବର୍ଦ୍ଧନ ଧର ରଜ ଉଦ୍ଧାରଣ ।
କାଞ୍ଚୀ କାବେରୀ ଘୋଟକ ପୃଷ୍ଠେ ଆରୋହଣ ॥

ଶ୍ରୀରାମ ଲକ୍ଷ୍ମଣ ରୂପ ଶେଷେ ରଜବେଶ ।
କି ପସନ୍ଦ ଦିଶୁଥାନ୍ତି ପ୍ରଭୁ ହୃଷୀକେଶ ॥

ଚେର ଫିଟା ପରେ ତିନି ପଣ୍ଡାଏ ଆରତୀ ।
କରନ୍ତେ ଲୋକ ଗହଳେ ମନ୍ଦିର ଭରନ୍ତି ॥

ବାଜଇ ଘଣ୍ଟ କାହାଳ ମୁଖ କୋଳାହଳ ।
ଦରଶନେ ମନେ ଜନ୍ମେ କେତେ କୁତୂହଳ ॥

ଠାକୁରଙ୍କ ଆଗେ ଥାଳୀ ଥୁଆ ହୋଇଥାଇ ।
ଯାତ୍ରୀ ଦକ୍ଷିଣା ଦିଅନ୍ତି ପ୍ରସାଦକୁ ପାଇ ॥

ଆଖ ପାଖରୁ ଆସନ୍ତି କେତେ ନରନାରୀ ।
ଫେରି ଯାଉଥାନ୍ତି ଦେବ ଦରଶନ ସାରି ॥

ଶରଦ ରାସ ପଢ଼ନ୍ତି ପୁରାଣ ପଣ୍ଡାଏ ।
ଏହିପରି ମହୋତ୍ସବ ନିତି ଲାଗିଥାଏ ॥

ପୌର୍ଣ୍ଣମାସୀ ଦିବସରେ ବାବାଙ୍କ ପ୍ରାସାଦେ ।
ଅଧିକା କଥାଏ କରାଯାଏ ଅପ୍ରମାଦେ ॥

ପୂଡ଼ା ପୂଜା ପରେ କ୍ଷୀର ଅଭିଷେକ ନୀତି ।
ପୂର୍ବରୁ ଲିଙ୍ଗ ଶୁଦ୍ଧି ପୁରୋଧା କରନ୍ତି ॥

ପଞ୍ଚାମୃତ ଘଷା ପରେ ଆଖୁର ଦୋହ୍ଲଏ ।
ଲିଙ୍ଗ ଉପରେ କରନ୍ତି ଅଭିଷେକ ରୁଏ ॥

ବଡ଼ ଦେଉଳ ଚୂଳରେ ବନ୍ଧାଯାଏ ନେତ ।
ପୁରାକାଳରୁ ଅଛନ୍ତି ଯେ ବିଧି ସଂକେତ ॥

ପଞ୍ଚକ ଯାତ୍ରା ଏହି ରୂପେ ହୁଏ ଶେଷ ।
ସ୍ମରିଣ ପ୍ରଭୁଙ୍କର ମହିମା ଅଶେଷ ॥

## ରାସ ପୂର୍ଣ୍ଣିମା ବେଶ

ପୁରାଣ କଥା ଗୋଟିଏ ପଡ଼ିଲା ମନରେ ।
ତା ଲେଖିବାକୁ ଲେଖନୀ ଧାଏଁ ଆଗଲେ ॥

ଅମାନିଆ ମତିକି ନପାରେ ଅଟକାଇ ।
ଦୋଷ ଥିଲେ କ୍ଷମାଦେବ ଭଉଣୀ ଓ ଭାଇ ॥

ପୂର୍ବେ ରାବଣ କୌଶଳ ଲଙ୍କାର ଈଶ୍ୱର ।
ବ୍ରହ୍ମା ବଂଶେ ଜାତ ନିଶାଚର ବୀରବର ॥

ଶୈବ ଧର୍ମାବଲମ୍ବୀ ମହା ବିଦ୍ୟାବନ୍ତ ।
ହର ଦରଶନେ ଆସେ କୈଳାସ ପର୍ବତ ॥

ପୁଷ୍ପକ ବିମାନେ ଏକା ପ୍ରତିଦିନ ଯାଏ ।
ସୁବିଧା ଅସୁବିଧା ତା ମନେ ମାନୁଥାଏ ॥

ଭାବିଲା କୈଳାସ ଶୈଳ ଆଣିବି ଉପାଡ଼ି ।
ସ୍ଥାପିବି ଲଙ୍କା ସୁବେଳ ଶିଖରେ ସଜାଡ଼ି ॥

ନ ପଡ଼ିବ ନିତି ଆସିବାକୁ ଏତେ ବାଟ ।
ଏତେ ଚିନ୍ତି ହୃଦୟକୁ କଲା ଅତି ଆଣ୍ଠ ॥

ରହି ତହିଁ ଏକ ଦିନ ନିଶୀଥ ସମୟେ ।
କଇଳାସ ଶୃଙ୍ଗ ଧରି ଦୃଢ଼େ ଦୋହଲାଏ ॥

ତଳକୁ ଆସି ଉପାଡ଼ି ମୁଣ୍ଡାଇଁ ମୁଣ୍ଡରେ ।
ଘୋର ଗର୍ଜନ ଶବଦ ପୂରେ ବ୍ରହ୍ମାଣ୍ଡରେ ॥

ଯୋଗନିଦ୍ରା ଯାଇଥିଲେ ଦେବି ସଦାନନ୍ଦ ।
ପାର୍ବତୀ ଦେବୀ ମଞ୍ଚାଳୁଛନ୍ତି ପଦ୍ମ ପାଦ ॥
ଚାଟକା ହୋଇ ଅମ୍ବିକା ଦେଲେ ଉଚ୍ଚେ ଡାକ ।
ବଡ଼ ଭୂମିକମ୍ପ ହେଲା ଉଠ ତ୍ରିଅମ୍ବକ ॥
ନିଶ୍ଚୟ ଅବନୀ ଦେବୀ ହୋଇବ ପାତାଳୀ ।
ତ୍ରିଭୁବନ କମ୍ପମାନ ଉଠ ହେ କପାଳି ॥
ଶୁଣି ନିଦ୍ରାଭଙ୍ଗି ଶୀଘ୍ର ବିଭୁ ବ୍ୟୋମକେଶ ।
ଯୋଗ ବଳରେ ଜାଣିଲେ ରାବଣ ଲଙ୍କେଶ ॥

ଭାବିଲେ ଅସୁର ଗିରି ଉପାଡ଼ୁଏ କାର୍ଯ୍ୟେ ।
ମୋତେ ନିତ୍ୟ ଦେଖିବାକୁ ନେଇ ନିଜ ରାଜ୍ୟେ ॥

କେତେ ସାହସ କରିଛି ରାକ୍ଷସ ଅଧମ ।
ଦେଖିବା ଦେହରେ ବହେ କେତେ ପରାକ୍ରମ ॥

ବାମ ହସ୍ତ ମୁଷ୍ଟି କରି ବୃଦ୍ଧ ଅଙ୍ଗୁଷ୍ଠ କି ।
ମାଡ଼ିଦେଲେ ଥିବା ଠାରେ ନିବେଶି ଦୃଷ୍ଟିକି ।।

ରାବଣ ପିଠିରେ ମାଡ଼ି ବସିଲା ପର୍ବତ ।
କମ୍ପାଇଲା ଘୋର ଗରଜନରେ ଜଗତ ।।

ମର୍ତ୍ତ୍ୟ ମଣ୍ଡଳେ ସକଳ ପ୍ରାଣି ଥରହର ।
ପାତାଳେ ବାସୁକୀ ଥରେ ସ୍ୱର୍ଗରେ ଅମର ।।

ଶଙ୍କର ଗଉରୀ ହସି ଚଳନ୍ତୁ ଓହ୍ଲାଇ ।
ଦେଖିଲେ ବିଚିତ୍ର ଭବେ ଅଛି ଭକ୍ତ ସାଇଁ ।।

ଅଣ୍ଟା ଆଉ ବିଂଶ ବାହୁ ଉଗଦେଇ ତଳେ ।
ବସିଛି ପିଠିରେ ଲଦା ହୋଇଛି ଅଚଳେ ।।

କଂଠ ତଳେ ରହିଲାଣି ଆସି ପ୍ରାଣପ୍ରାଣ ।
ବୋଲେ ଶିବ ଦୁର୍ଗେ ମୋତେ କରି ପରିତ୍ରାଣ ।।
ଅନାୟାସେ ମରିଯିବି ବାବା ହେ ଉଦ୍ଧାର ।
ତାତ ମାତଃ ! ଚରଣରେ କରେ ନମସ୍କାର ।।

ଶୁଣି ହେଳେ ରୁଦ୍ର ଠେଲି ଦେଲେ ବାମ ପାଦେ ।
ଗର୍ଜ୍ଜିଗଲା ଗିରିବର ଗୋଟି ଘୋର ନାଦେ ।।

ଉଠି ରାବଣ ଦୁହିଙ୍କି କରି ଦଣ୍ଡବତ ।
ଲାଜ ଭୟେ ହେଲା ବେଗେ ପୁରେ ପ୍ରତ୍ୟାଗତ ।।

ପ୍ରତିବରଷ କାର୍ତ୍ତିକ ପୂର୍ଣ୍ଣମୀ ସଂଜରେ ।
ଅବିକଳ କରନ୍ତି ତା ସେବକେ ଝଂଜରେ ।।

ବାବାଙ୍କର ଲିଙ୍ଗ ପରେ ରୂପାର ମୁକୁଟ ।
ଦିଶୁଥାଇ ଝଟ ଝଟ ଯଥା ଜଟା ଜୁଟ ।।

ତହୁଁପରି ଶଶିରେଖା ଗଙ୍ଗା ଦେବୀ ବାର ।
ଉର୍ଦ୍ଧ୍ୱରେ ଅଭିଷେକ ପାତ୍ର ନୀର ଧାର ।।

ତାଳ ପତରେ ପ୍ରସ୍ତୁତ ହୋଇଥାଇ ଗିରି ।
ଉଚ୍ଚେ ବିଜୟେ ପ୍ରତିମା ଶଙ୍କର ଗଉରୀ ।।

ପୂର୍ବ ବର୍ଣ୍ଣନା ପ୍ରକାର ରାବଣ ମୁରତି ।
ଗମ୍ଭୀରରେ ବସିଥାଏ ହୋଇଣ ଆରତି ।।

ନାନା ବର୍ଣ୍ଣରେ ଅନେକ ଦିଶେ ସାଜସଜ୍ଜା ।
ସେ ଶୋଭା କଥନେ କ୍ଷମ ହେବ କାହା ମଜ୍ଜା ।।

ନିଶାର୍ଦ୍ଧ କାଳ ପର୍ଯ୍ୟନ୍ତ ରହେ ଏହି ବେଶ ।
ଦୂର ନିକଟରୁ ଯାତ୍ରୀ ଆସନ୍ତି ଅଶେଷ ।।

ନିଃଶୁଦ୍ଧି ଭୋଗି ହୁଏ ହଜାର ହଜାର ।
ବିକାକିଣା ଲଗିଥାଏ ବାହାର ବଜାର ।।

ଗଣ୍ଡ କାହାଳ ମର୍ଦ୍ଦଳ ତାଳ ବାଜୁଥାଏ ।
ନୃତ୍ୟ ଗୀତ ମହୋତ୍ସବେ ପୁରି ପୁରି ଯାଏ ।।

ଏରୂପେ ବଡ଼ କାର୍ତ୍ତିକ ପୌର୍ଣ୍ଣମାସୀ କୃତ୍ୟ ।
ପ୍ରଭୁ କରୁଣାରୁ ଜଣା ମଣା କରେ ଭୃତ୍ୟ ।।

## ଶ୍ରୀରାମ ନବମୀ

ଚୈତ୍ରମାସ ଶୁକ୍ଳ ପକ୍ଷ ନବମୀ ଯେ ତିଥି ।
ଶ୍ରୀରାମ ନବମୀ ବ୍ରତ ମହୋତ୍ସବ କ୍ଷିତି ।।

ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ ।
ପରଶୁ ଧର ଅନ୍ତରେ ଶୁଭ ଆଗମନ ।।

ଚତୁର୍ଦ୍ଧା ମୂର୍ତ୍ତିରେ ରାମଚନ୍ଦ୍ର ଅବତାର ।
ଭରତ ଲକ୍ଷ୍ମଣ ଶତ୍ରୁଘ୍ନ ସହୋଦର ।।

ଦଶକନ୍ଧ, କୁମ୍ଭକର୍ଣ୍ଣ ମେଘନାଦ ଆଦି ।
ଦୈତ୍ୟ ବର୍ଗ ହତେ ତେଜି ବଇକୁଣ୍ଠ ଗାଦି ।।

ଦେବତାଙ୍କ ହିତେ ଜନମିଲେ ଅଯୋଧ୍ୟାରେ ।
ଧରା ଭାର ହରି ଦଶରଥ ରାଜାଗାରେ ।।

ଅଲୌକିକ କୀରତିକି ସ୍ଥାପି ଧରା ଧାମେ ।
ଶାନ୍ତି ରକ୍ଷା କରି ହରିଗଲେ ନିଜ ଗ୍ରାମେ ।।

ସେହି ଦିନୁ ଏହି ବ୍ରତ ଭାରତବରଷେ ।
ନର ନାରୀଏ ପାଳନ୍ତି ନିଷ୍ଠାରେ ହରଷେ ।।

ବାବା ଦେବଙ୍କର ବେଢ଼ା ମନ୍ଦିର ଭିତରେ ।
ବିଜୟେ ରାମ ଲକ୍ଷ୍ମଣ ସୀତା ସହିତରେ ।।

ଏଦିନ ମଧ୍ୟାହ୍ନ କାଳେ ପୂଜା ହୋମ ଆଦି ।
ଜନ୍ମ ବିଧି ହୁଏ ନାନା ପଦାର୍ଥ ସଂପାଦି ॥
ପକାଇଥାନ୍ତି ସେବକେ ଆଲଟ ଚାମର ।
ଶ୍ରୀଅଙ୍ଗେ ଚାନ୍ଦୁଆ ବନ୍ଧା ଗମ୍ଭୀର ଉପର ॥
ଟେକା ହୋଇଥାଏ ଛତ୍ର ତରସ ଟିରଜ ।
ବାଜଇ କାହାଳ ଘଣ୍ଟା ତୁରି ଗୋଳ ତାଳ ॥
ଏସନେ ରାମ ଜୟନ୍ତି ବ୍ରତ ବିଧି ସରେ ।
ଶ୍ରୀରାମ ପ୍ରସାଦେ ପଦ ମାନସେ ପ୍ରସରେ ॥

## ଶ୍ରୀଗୁଣ୍ଡିଚା

ଜ୍ୟେଷ୍ଠ ମାସ ଶୁକ୍ଳପକ୍ଷ ପୌର୍ଣ୍ଣମାସୀ ଦିନ ।
ବରଷକୁ ବରଷ ଏ ତିଥି ଦେବ ସ୍ନାନ ॥
ବାବାଙ୍କ ବେଢ଼ା ଭିତର ପାହୁଣ୍ଡ ଆଳୟେ ।
ଜଗନ୍ନାଥ ବଳଭଦ୍ର ସୁଭଦ୍ରା ବିଜୟେ ॥
ଏଦିନ ପ୍ରଭାତ କାଳେ ସମ୍ଭାର ସାଟୋପେ ।
ପହଣ୍ଡି ହୁଅନ୍ତି ଦେବ ସେ ସ୍ନାନ ମଣ୍ଡପେ ॥
ଟଣା ହୋଇଥାଏ ତହିଁ ଉପରେ ଚାନ୍ଦୁଆ ।
ପଡ଼ିଥାନ୍ତି ପ୍ରଭୁ ପାଟ ପତନି ଖଣ୍ଡୁଆ ॥
ଶିରରୁ ଚରଣ ଯାଏଁ ଦିଅନ୍ତି ଗାଧୋଇ ।
ଶ୍ରୀଅଙ୍ଗ ପୋଛନ୍ତି ବାସ ଦିଅନ୍ତି ପିନ୍ଧାଇ ॥
ସେବକେ ସର୍ବାଙ୍ଗ ଧୂପ ବଢ଼ାନ୍ତି ବିଧିରେ ।
ସଞ୍ଜକୁ ପୁଣି ପହଣ୍ଡି କରାନ୍ତି ମନ୍ଦିରେ ॥
ସେଦିନ ସଞ୍ଜରେ ହୁଏ ଠାକୁରଙ୍କୁ ଜ୍ୱର ।
ଆଗେ ତିନି ଚିତ୍ରପଟ ଥାଏ ନିରନ୍ତର ॥
ଆଷାଢ଼ କୃଷ୍ଣ ଦଶମୀ ଯାଏଁ ହୁଏ ଭୋଗ ।
ଦଶମୂଳ ପାଣି ପିଇ ହୁଅନ୍ତି ଆରୋଗ୍ୟ ॥
ଏକାଦଶୀ ଦିନ ଠାରୁ ଖଡ଼ି ଲଗି ହୋଇ ।
ବିଚିତ୍ର ଚିତ୍ର ହୁଅନ୍ତି ତିନି ଦେବ ତହିଁ ॥

ଅମାବାସ୍ୟା ଦିବସରେ ହୁଅନ୍ତି ଯେ ଲଗ ।
ପ୍ରତିପଦା ଦିନ ନେତ୍ରଉତ୍ସବ କି ଶୋଭ ॥
ଏଦିନ ନିଅନ୍ତି ତିନି ଚିତ୍ରପଟ କାଢ଼ି ।
ଏପର୍ଯ୍ୟନ୍ତ ନିତି ଭୋଗ ହୁଏ ନିଃସଙ୍ଖୁଡ଼ି ॥
ଶୁକ୍ଳ ଦ୍ୱିତୀୟା ଦିନ ଶ୍ରୀ ଗୁଣ୍ଡିଚା ଯାତ୍ରା ।
ସଙ୍ଖୁଡ଼ି ନିଃସଙ୍ଖୁଡ଼ିର ବଢ଼େ ଭୋଗ ମାତ୍ର ॥
ତିନିଦେବ ନବ ଯଉବନ ଦରଶନେ ।
ବହୁ ପୁଣ୍ୟ ଫଳପ୍ରାପ୍ତି ଦେଖନ୍ତି ସଜନେ ॥
ନୂତନ ପ୍ରସ୍ତୁତ ହୋଇଥାଇ ତିନ ରଥ ।
ପହଣ୍ଡି ହୁଅନ୍ତି ଭ୍ରାତା ଭଗ୍ନୀ ଜଗନ୍ନାଥ ॥
ଖଜାପିଠା ଭୋଗ ଲଗ ଆରତି ବଢ଼ାଇ ।
ନିଅନ୍ତି ଠାକୁରେ ପଣ୍ଡା ଗଡ଼ାଇ ଚଢ଼ାଇ ॥
ପୂର୍ବରୁ ପ୍ରତିଷ୍ଠା କରିଥାନ୍ତି ପୁରୋହିତ ।
ରଥ ପ୍ରଦକ୍ଷିଣ କରି ଚଢ଼ନ୍ତି ତ୍ୱରିତ ॥
ଆଗେ ବଳଭଦ୍ର ତା ମଧ୍ୟେ ଦେବୀ ରଥେ ।
ଭଦ୍ରା ବିଜେ ପଛେ ନନ୍ଦିଘୋଷେ ଜଗନ୍ନାଥେ ॥
ଟେକା ହୋଇଥାଏ ଛତି ତରସ ଟିରଜ ।
ବାଜେ ବାଜା କାହାଳୀ ଯେ ଘଣ୍ଟା ମରଦଳ ॥
ସାରଥୀ ଘଣ୍ଟ ପକାଏ ରଥେ ହୋଇ ଠିଆ ।
ଭିଡ଼ନ୍ତି ରଥ ଦଉଡ଼ି ଧରିଣ ବେଠିଆ ॥
ଘୁ, ଘୁ ଶବ୍ଦ କରି ରଥ କି ବେଗେ ଚଳଇ ।
ସଞ୍ଜବେଳକୁ ଗୁଣ୍ଡିଚା ମଣ୍ଡପେ ମିଳଇ ॥
ସେଦିନ ରହନ୍ତି ତିନି ଦେବତା ରଥରେ ।
ବାସି ବିଜୟ କରନ୍ତି ଆଡ଼ପ ମଠରେ ॥
ତିନି ଧୂପ ପାଞ୍ଚ ଅବକାଶ ବହୁ ରୂପେ ।
ବଢ଼େ ସାତ ଦିନ ଯାଏଁ ଆଡ଼ପ ମଣ୍ଡପେ ॥
ପାଞ୍ଚ ଦିନେ ହେରା ଯାତ୍ରା ଲକ୍ଷ୍ମୀ ଠାକୁରାଣୀ ।
ଗୁଣ୍ଡିଚା ମଣ୍ଡପେ ଯାଇ ସ୍ୱହାନ୍ତି ସିହାଣୀ ॥

ଅଡ଼ପ ମଣ୍ଡପେ ଛନ୍ତି ସେହି ଭଗ୍ନୀ ଭ୍ରାତା ।
ଗୁହ ତଥ୍ୟରେ ସୁଖ ଭୋଗେ ଆପଣାର ଭୂତା ॥
ଦେଖି କ୍ରୋଧେ ସ୍ୱାମୀଙ୍କର ଭାଙ୍ଗନ୍ତି ରଥକୁ ।
ତଦନ୍ତେ ଆସନ୍ତି ଅନୁସରିଣ ପଥକୁ ॥
ନବମୀ ଦିନ ସନ୍ଧରେ ଦକ୍ଷିଣ ଆରତୀ ।
ତିନି ପଣ୍ଡାଏ ଠାକୁରେ ବନ୍ଦାଣ କରନ୍ତି ॥
ଦଶମୀ ଦିନ ପଶ୍ଚିମମୁଖା ବିମାନକୁ ।
ପୂର୍ବ ମୁଖରେ ବୁଲନ୍ତି ଖୋଜି ସେ ସ୍ଥାନକୁ ॥
ଠାକୁର ପହଣ୍ଡି ପରେ ରଥ ହୁଏ ଭିଡ଼ା ।
ତାହାର ନାମଟି ଖ୍ୟାତ ଯାତର ବାହୁଡ଼ା ॥
ଶ୍ରୀଗୁଣ୍ଡିଚା ଦିନ ରଥେ ରହନ୍ତି ଠାକୁର ।
ଦଶମି ବାହୁଡ଼ାଦିନ ଏହି ପରକାର ॥

ମଧ୍ୟେ ସପ୍ତ ଦିନ ମାତ୍ର ରହନ୍ତି ଅଡ଼ପେ ।
ନାନାବିଧ ଭୋଗ ଭୁଞ୍ଜି ଗୁଣ୍ଡିଚା ମଣ୍ଡପେ ॥
ଏହିପରି ଜଗନ୍ନାଥ ଯାତ୍ରା ନବଦିନ ।
ବରଷକେ ଲକ୍ଷ୍ମୀ ନାରାୟଣ ଭିନ୍ନ ଭିନ୍ନ ॥
ଏକାଦଶୀ ଦିନ ରଥୁଁ ପହଣ୍ଡି ହୁଅନ୍ତି ।
ଜାଣି ଠାକୁରାଣୀ କୋପେ କପାଟି ଦିଅନ୍ତି ॥
କେତେ ଖୁସାମତି କଲେ ଫିଟଇ କବାଟ ।
ସର୍ବ ଶୁଭେ ଘଟେ ଲକ୍ଷ୍ମୀ ନାରାୟଣ ଭେଟ ॥
ତହୁଁ ପ୍ରଭୁଙ୍କର ଶୟନକ ବିଧି ହୁଏ ।
ଚତୁର୍ମାସ୍ୟା ବ୍ରତ ଆଜୁଁ ଚାରିମାସ ଯାଏଁ ॥
ଜଗନ୍ନାଥ ବଳଭଦ୍ର ଶ୍ରୀ ସୁଭଦ୍ରା ଦେବୀ ।
ଗୁଣ୍ଡିଚା ବାହୁଡ଼ା ଯାତ୍ରା ଶେଷ ପାଦ ସେବି ॥

# ପଞ୍ଚମ ଭାଗ

## ପୁଣ୍ୟ ପର୍ବ ଭିତର ଚନ୍ଦନ

ଭଉଁରୀ ବାପି ବାବାଙ୍କ ଲଭ ରୂପ ହୁଏ ।
ପୋଖରୀରେ ନାବେ ବସି ବୁଲନ୍ତି ବେଢ଼ାଏ ॥
ପୂର୍ବପରି ରହି ଧୂପ ଦ୍ୱାର ପୂଜା ସାରି ।
ସାତୋପେ ମନ୍ଦିରେ ବିଜେ ଦେବ ଦର୍ପକାରୀ ॥
ଏମନ୍ତେ ବାଇଶ ରତି ବାହାର ଚନ୍ଦନ ।
ଭିତର ଚନ୍ଦନ ହୁଏ ତହିଁ ଆରଦିନ ॥
ସକାଳ ଧୂପର ପରେ ଚନ୍ଦନ କୁଣ୍ଡରେ ।
ଚନ୍ଦ୍ରଶେଖର ପ୍ରତିମା ମୁକୁଳା ପିଣ୍ଡରେ ॥
ଛାତିଏ ପାଣିରେ ପ୍ରଭୁ ଭିଜ ହୋଇଥାନ୍ତି ।
ସନ୍ଧ୍ୟା କାଳକୁ ବଢ଼ାଏ ପଣା ପୂଜା ପାଣି ॥
ଶ୍ରୀଅଙ୍ଗ ପୋଛି କାଢେଣି ହେଲେ ଦେବ ।
ଭଣ୍ଡାରୀ ବିଜେ ସଙ୍ଗରେ ଟେର ଫିଟା ହେବ ॥

ଏହିପରି ଲାଗିଥାଏ ଦ୍ୱାବିଂଶ ଦିବସ ।
ଭିତର ଚନ୍ଦନ ବିଧି ପ୍ରତ୍ୟେକ ବରଷ ॥

## ବସୋର୍ଦ୍ଧାରା

ଚୈତ୍ର ବା ବୈଶାଖ ମାସେ ବିଷୁବ ସଂକ୍ରାନ୍ତି ।
ପଣା ସଂକ୍ରାନ୍ତି ନାମରେ କ୍ଷିତୀରେ ବିଖ୍ୟାତ ॥
ପୃଥିବୀ ମଧ୍ୟରେଖାରେ ସୂର୍ଯ୍ୟ ଗତାଗତ ।
ସମ ଦିବସ ରଜନୀ ଋତୁ ସୁ ବସନ୍ତ ॥
ପୂର୍ବ ଦିଗରେ ରବି ହୁଅନ୍ତେ ଉଦିତ ।
ବାବାଙ୍କ ଲିଙ୍ଗରେ ଖର ପଡ଼ଇ ନିଶ୍ଚିତ ॥
ଆଜି ମେଷ ମାସର ଯେ ଅନୁକୂଳ ଦିନ ।
ସକଳେ କରନ୍ତି ପଣା ଘଟ ଛତ୍ର ଦାନ ॥
ବାବାଙ୍କ ବେଢ଼ା ତୁଳସୀ ଚଉଁରା ମୂଳରେ ।
ତାଳପତ୍ର ଛାମୁଣ୍ଡିଆ କରନ୍ତି ଚୂଳରେ ॥

ବାନ୍ଧନ୍ତି ପୁରୋଧା ଉର୍ଦ୍ଧ୍ୱେ ବସୋଦ୍ଧାର ଘଟ
ଦିଅନ୍ତି ଭିତରେ କଣା କରି କୁଶ ଗଣ୍ଠି ॥

କୁଶ ଅଗ୍ରେ ଜଳବିନ୍ଦୁ ତୁଳସୀ ପାଦପେ ।
ମେଷମାସ ଶେଷ ଯାଏଁ ପଡ଼େ ଟୋପେ ଟୋପ ॥

ସେଠାରେ ହୁଏ ବ୍ରାହ୍ମଣେ ପଣା ଛତା ଦାନ ।
ମାସେ ମେଷ ପଣା ଭୋଗ ବାବାଙ୍କ ମଧ୍ୟାହ୍ନ ॥

ଗମ୍ଭୀରୀ ଭିତର କାନ୍ଥେ ହାତକ ଉଚ୍ଚରେ ।
ସପ୍ତ ଘଟ ରଖାଯାଏ କାଠ ଖଟ ପରେ ॥

ମଧ୍ୟେ ଛିଦ୍ରେ କୁଶ ଅଗ୍ରେ ଆସୁଥାଏ ପାଣି ।
ଲିଙ୍ଗ ଉପରି ଉପରେ ଅଭିଷେକ ଜାଣି ॥

ମେଷ ଆରମ୍ଭରୁ ବୃଷ ମାସ ଶେଷ ଯାଏ ।
ନିତି ଏହି ରୀତି ବସୁଧାର ବସିଥାଏ ॥

ରୁପାର ନିର୍ମିତ ବସୋର୍ଦ୍ଧାର ପାତ୍ରେ ବାରି ।
ଦିଅଯାଉଥାଏ ନିତି ବାରି ପୂର୍ଣ୍ଣକରି ॥

## ଚିତ୍ତାଲାଗି

ଶ୍ରାବଣ ମାସର କୃଷ୍ଣ ଅମାବାସ୍ୟା ଦିନ ।
ବାବା ଜିଉଙ୍କର ଚିତା ଲାଗି ଯେ ବିଧାନ ॥

ସକାଳ ଧୂପରେ ଲାଗି ହୁଏ ସୁନା ଚିତା ।
ପୂଜା ହୋଇ ଭୋଗ ସଙ୍ଗେ ସେ ଚିତାଉ ପିଠା ॥

## ସାତପୁରୀ

ଭଦ୍ର ମାସ କୃଷ୍ଣପକ୍ଷ ଅମାବାସ୍ୟା ଯୋଗ ।
ଲିଙ୍ଗ ବାବାଙ୍କର ହୁଏ ସପ୍ତପୁରୀ ଭୋଗ ॥

ଛେନା ସଦମ ନଡ଼ିଆ ମୁଗ ଘିଅ ଗୁଡ଼ ।
ପୂର୍ବରୁ ଗଢିରୁ ସବୁ ହୁଅଇ ଯୋଗାଡ଼ ॥

ଚବିଶ ଥାଙ୍ଗୁଳ ବୃତ୍ତ ଅଟାର କାକେରା ।
ଫୁଲ ତୁଳସୀର ଚୂଳ ତାପରେ ଘେରା ॥

ସହସ୍ର ସଙ୍ଖ୍ୟାରେ କେତେ ଛୋଟ ବଡ଼ ପିଠା ।
ଠାକୁରଙ୍କ ଭୋଗ ଲଗେ ଆହା କେଡ଼େ ମିଠା ॥

ତାହା ସଙ୍ଗେ ପୂଜା କରଯାଏ ସପ୍ତପୁରୀ ।
ମହ ମହ ବାସୁଥାଏ ତାହା ସପ୍ତପୁର ॥

ସକାଳ ଧୂପର ପର ଅଣ୍ଟୁଣିଆ ହୁଏ ।
ଛାମୁନି ବାଡ଼ କାକେର ରଜାଘର ଯାଏ ॥

ଗଜ କର୍ମଗୁଣୀଠାରୁ ସର୍ବ ସେବାୟତ ।
ପାଆନ୍ତି ଦେବ ପ୍ରସାଦ ଅଳପ ବହୁତ ॥

## ଗଣେଶ ଚତୁର୍ଥୀ

ଭାଦ୍ର ମାସ ଶୁକ୍ଳପକ୍ଷର ଚତୁର୍ଥୀ ।
ଗଣେଶ୍ୱର ଆବିର୍ଭାବ ଦିବସ ଏ ତିଥି ॥

ବିଦ୍ୟାର୍ଥୀ ଏ ଉପବାସେ ରହିଣ ଖାଡ଼ିଆ ।
ବିଘ୍ନେଶ ପୂଜନ୍ତି କରି ନଡ଼ିଆ ବାଡ଼ିଅ ॥

ବାବାଙ୍କ ରେଖ ମନ୍ଦିର ଦକ୍ଷିଣ ଭାଗର ।
ପାର୍ଶ୍ୱ ଦେବ ଶିଳା ରୂପେ ବିଜେ ଲମ୍ବୋଦର ॥

ଚୂଡ଼ାଘଷା ଗଣ୍ଡି ଖଜା ରମ୍ଭା ନଡ଼ିଆଜ ।
ନଇବେଦ୍ୟ ଦିଆଯାଏ ମଧ୍ୟାହ୍ନର କାଳି ॥

ଶିବ ଶିବା ଦେବ ଦେବୀ ପୁତ୍ର ଜନ୍ମୋତ୍ସବ ।
ପାଳିତ ହୁଏ ମନ୍ଦିରେ ଅତି ସମ୍ଭ୍ରମ ॥

## ନବାନ୍ନ

ଭାଦ୍ରପଦ ମାସ ଶୁକ୍ଳପକ୍ଷର ଦ୍ୱାଦଶୀ ।
ବାମନ ଦେବ ଜନମ ମଧ୍ୟାହ୍ନରେ ଭାଷି ॥

ବାବାଙ୍କର ଭଜନରେ ନବାନ୍ନ ଭୋଜନ ।
କାକୁଡ଼ି ନଡ଼ିଆ ନୂଆ ଚୂଡ଼ା ଯେ ପୂଜନ ॥

ତାପରେ ସେବାୟତ ଆଣି ନିଜ ଘରୁ ଦ୍ରବ୍ୟ ।
ବାବାଙ୍କୁ ପୂଜି ନବାନ୍ନ ଭୁଞ୍ଜନ୍ତି ସରବ ॥

ସକାଳ ଧୂପ ସଙ୍ଗରେ ନୂଆ କ୍ଷୀରୀ ଲଗି ।
ପୂଜା ପାଆନ୍ତି ଦେଉଳ ଦେବତା ଯାବତ ।।

ବରଷା ଋତୁରେ ଜାତ ଯେ କୋଳିଆ ଧାନ ।
ଚୂଡ଼ା ଗ୍ରାମଳେ କରନ୍ତି ନବାନ୍ନ ବିଧାନ ।।

ଆଜି ସମ ଦିବା ରାତ୍ର ଶ୍ରୀଅଙ୍ଗେ କିରଣ ।
ଉଦୟ କାଳେ କରନ୍ତି ଭାନୁ ବିକୀରଣ ।।

ଅଦ୍ୟ ଉତ୍କଳ ପ୍ରଦେଶ ମହାରାଜାଙ୍କର ।
ନୂଆ ଅଙ୍କ ଗଣାଯାଏ ଏକ ସମ୍ବତ୍ସର ।।

## ଦୁତିଆ ଓଷା

ଆଶ୍ୱିନ ମାସରେ କୃଷ୍ଣ ଅଷ୍ଟମୀ ଯେ ରାତି ।
ଦୁତିଆ ଓଷା ବିଧାନ ବଢ଼େ ପ୍ରଭୁ କତି ।।

ଋତୁ ଜାତ ଫଳ ମୂଳ ପନି ପରିବାକୁ ।
ସଜାଡ଼ି ରଖନ୍ତି ତାଙ୍କ ପୂଜା କରିବାକୁ ।।

ଦୂତୀ ବାହନ ଜୀମୂତ ବାହନଙ୍କ ନାମେ ।
ଅର୍ପଣ କରନ୍ତି ପଣ୍ଡା ନିଶି ଯୁଗ୍ମ ଯାମେ ।।

ରାତି ପାହିଲେ ହୁଅଇ ଘାଣ୍ଟତରକାରି ।
ପାଆନ୍ତି ସର୍ବ ସେବକ ଦେବ କର୍ମଚାରୀ ।।

## ନବାଙ୍କ ବେଢ଼ା

ଧନୁ ମାସ ଶେଷ ଦିନ ପ୍ରଦୋଷ ଭାଗରେ ।
ନବାଙ୍କ ବେଢ଼ା ବୁଲନ୍ତି ଅତି ସରଗରେ ।।

ଚନ୍ଦ୍ରଶେଖର ପ୍ରତିମା ସୁବେଶେ ବସାଇ ।
ଘଣ୍ଟ କାହାଳ ବଜାଇ ପ୍ରଭରେ ବସାଇ ।।

ବୁଲନ୍ତି ଚଉପାଶରେ ପାଟ ବୃକ୍ଷଭର ।
ମହା ସମ୍ଭ୍ରମେ ଗଣି ଗଣି ଛଅ ଥର ।।

ବେଢ଼ାରେ ବୁଲନ୍ତି ତିନି ବେଢ଼ା ପୂର୍ବପରି ।
ଆଉ ଦୁଆର ବାଟରେ ଆସନ୍ତି ଫେରି ।।

ପୂର୍ବେ ଆମ ରାଜ୍ୟ ଅତି କ୍ଷୁଦ୍ର ହୋଇଥିଲା ।
ମୂଳକ ବଢ଼ାଇବାକୁ ରାଜାଙ୍କୁ ଦିଶିଲା ।।

ପରାକ୍ରମଶାଳୀ ରାଜା ଆଖ ପାଖ ନୃପ ।
ଗଣଙ୍କୁ ହଟାଇ ଯୁଦ୍ଧେ ହେଲେ ବଡ଼ଭୂପ ।।

ପୋଡ଼ାଗଡ଼ ଗୁନାମାଟି ବାଣ ରଣପୁର ।
ତୁଲୁବି ବଉଦ ପାଞ୍ଚଗଡ଼ ଘୁମୁସର ।।

ବାଙ୍କି ଆଦି ନଅ ଗଡ଼ ରାଜବୃନ୍ଦ ଜିଣି ।
ନୂଆଗଡ଼ ରାଜ୍ୟ ନାମ ଦେଲେ ନୃପମଣି ।।

କାଳକ୍ରମେ ନୟ ଗଡ଼ ନାମ ହେଲା ଖ୍ୟାତ ।
ସମାପତ ହେଲା ଯୁଦ୍ଧ ଧନୁର ମାସନ୍ତ ।।

ସ୍ମାରକ ରହିବାପାଇଁ ନିଜ ଇଷ୍ଟଦେବ ।
ବାବାଙ୍କ ନବାଙ୍କ ବେଢ଼ା ଭିଆଇଲେ ପର୍ବ ।।

ବେଢ଼ା ପରିକ୍ରମା ପରେ ଗମ୍ଭୀରୀ ବିଜୟେ ।
ବଢ଼ାଇ ଦେବଙ୍କ ଧୂପ ନୈବେଦ୍ୟ ନିଚୟେ ।।

## ଧନୁ ମୂଆଁ

ପୌଷ ଶେଷ କିମ୍ବା ଆରମ୍ଭରେ ମାଘ ମାସେ ।
ପଡ଼େ ଧନୁ ସଂକ୍ରମଣ ପ୍ରଥମ ଦିବସେ ।।

ସକାଳ ଶୀତରେ କଲବେଳେ ନିଆଁ ପୁଆଁ ।
ସବୁ ଦେବ ଦେବୀ ଭୋଗ ଲାଗେ ଧନୁ ମୁଆଁ ।।

ଦଶ ଗଉରୀ ଲେଖାଏଁ ମାପକରି ଲିଆ ।
ତିଆରି କରନ୍ତି ମୁଆଁ ଓଳିଆ ଉଳିଆ ।।

ତୁମ୍ବ ଡ଼ିବା ମାଣ ବୋଡ଼ା ପରି ମୁଆଁ କେତେ ।
ପୂଜା କରନ୍ତି ମନ୍ଦିରେ ଦିଅଁ ଛନ୍ତି ଯେତେ ।।

ଭୋଗ ଶେଷେ ବଡ଼ ମୁଆଁ ରାଜପୁରେ ଯାଏ ।
ବାକି ପ୍ରସାଦ ପାଆନ୍ତି ସେବକେ ସଭିଏଁ ।।

ବାସି ଦିନ ପ୍ରଭାତରୁ ସେ ପହିଲି ଭୋଗ ।
ମାସେ ପର୍ଯ୍ୟନ୍ତ ସକାଳ ଧୂପ ପଡ଼େ ଯୋଗ ।।

## ଦୀପାବଳୀ

ଦୀପାବଳି ଅମାବାସ୍ୟା ମାର୍ଗଶିର ମାସେ ।
ସନ୍ଧେ ଦୀପ ମାଳା ଜଳେ ବାବାଙ୍କର ପାଶେ ॥
ଅଷ୍ଟୋତ୍ତର ଶତ ପରିମିତ ଘୃତ ଦୀପ ।
ଜଳେ ସକଳ ନିଳୟେ ବାବାଙ୍କ ସମୀପ ॥
ପାଚେରୀରେ ବେଢ଼ାରେଜେ ଦେଉଳ ଉପରେ ।
ଦିଶଇ ଦୂରକୁ ଶୋଭା ବିବିଧ ରୂପରେ ॥
ମନେହୁଏ ଗଗନସ୍ଥ ସୁନ୍ଦର ଚମ୍ପା କଢ଼ୀ ।
ଠାକୁରଙ୍କ ବନ୍ଦାଣକୁ ପଡ଼ିଅଛି ଝଡ଼ି ॥
ଗଡିଯାକ ଜଳୁଥାଇ ଏମନ୍ତେ ଆଲୋକ ।
ବେଢ଼ି କରି ଦେଖୁଥାନ୍ତି ତାକୁ ସର୍ବ ଲୋକ ॥

## ବ୍ୟଞ୍ଜନ ଦ୍ୱାଦଶୀ

ମାର୍ଗଶିର ଶୁକ୍ଳ ପକ୍ଷ ବ୍ୟଞ୍ଜନ ଦ୍ୱାଦଶୀ ।
ବିବିଧ ବ୍ୟଞ୍ଜନ ପୂଜା ହୁଏ ଏହି ନିଶୀ ॥
ସନ୍ଧ ଧୂପ ସମୟରେ ଲାଗିଗଲେ ଭୋଗ ।
ପ୍ରସାଦ ପାନ୍ତି ସେବାସୀ ପଡ଼ିଯାଏ ଯୋଗ ॥

## ନବ ପତ୍ରିକା

ଚୈତ୍ର ମାସ ଶୁକ୍ଳ ପକ୍ଷ ପ୍ରତିପଦା ଦିନ ।
ହୁଏ ଦେବୀ ପର୍ବ ନବ ପତ୍ରିକା ବିଧାନ ॥
ନବମୀ ପର୍ଯ୍ୟନ୍ତ ବାସନ୍ତିକ ପର୍ବ ପୂଜା ।
ସକାଳ ଧୂପରେ ଦିଆଯାଏ ବଳିଭୋଜା ॥
ସେବକେ ସୁବେଶ କରି ଦେବୀଙ୍କ ସମ୍ବୋଧି ।
ଦଶମୀ ଦିନ କରନ୍ତି ଦଶହରା ବିଧି ॥

## ମଙ୍ଗଳବାର (ଦେବୀ) ଧୂପ

ପ୍ରତି ମଙ୍ଗଳବାରରେ ଠାକୁରାଣୀଙ୍କର ।
ପୂଜା ବଢ଼ଇ ସକାଳ ଧୂପ ଅନନ୍ତର ॥
ଛେଳି ମୁଣ୍ଡ ଗଞ୍ଜା ମୁଣ୍ଡ ଦୋଳଜା ଚଢ଼ାରେ ।
ପୂଜା କରନ୍ତି ପଣ୍ଡାଏ ଷୋଡ଼ଶୋପଚାରେ ॥
ବାଜନ୍ତେ ଘଣ୍ଟ କାହାଳ ବହୁବିଧ ବାଦ୍ୟ ।
ଉଛୁଳେ ଦେବୀ ମନ୍ଦିର ଗୋଟି ମହାନାଦେ ॥

## ଗୁରୁବାର ଲକ୍ଷ୍ମୀପୂଜା

ସକାଳ ଧୂପ ସରନ୍ତେ ପ୍ରତି ଗୁରୁବାରେ ।
ମୁଖଶାଳା ମଧ୍ୟେ ଲକ୍ଷ୍ମୀ ପୂଜା ହୁଏ ବାରେ ॥
ଲକ୍ଷ୍ମୀ ପ୍ରତିମାକୁ ନାନା ସୁବେଶ କରାଇ ।
ପ୍ରଭାରେ ବସାନ୍ତି ଘଣ୍ଟ କାହାଳ ବଜାଇ ॥
ମଣ୍ଡା ଅଟକାଳି ଆଦି ବିବିଧ ପ୍ରକାରେ ।
ଦିଅନ୍ତି ନୈବେଦ୍ୟ ପଣ୍ଡା ଷୋଡ଼ଶୋପଚାରେ ॥
ଶୁକ୍ଳ ଦଶମୀ ପଡ଼େ ଯେ ମାସେ ଗୁରୁବାରେ ।
ଲକ୍ଷ୍ମୀଙ୍କ ସୁଦଶା ବ୍ରତ ପୂଜନ୍ତି ସମ୍ଭାରେ ॥
ଦଶ ମଣ୍ଡା ଲଡ଼ୁ କ୍ଷୀରୀ ଖେଚଡ଼ି ବ୍ୟଞ୍ଜନେ ।
ନିବେଦନ୍ତ ଲକ୍ଷ୍ମୀ ଦେବୀ ମାନସ ରଞ୍ଜନେ ॥
ମାର୍ଗଶିର ଶେଷ ଗୁରୁବାର ମାଣବସା ।
ପୂଜା ପାଇଁ ଲକ୍ଷ୍ମୀ ଦେବୀଙ୍କର ବଡ଼ ଓଷା ॥
ମୁଖଶାଳା ମଧ୍ୟେ ପୂଜା ବଢ଼େ ମହୋତ୍ସବେ ।
କ୍ଷୀରୀ ଖେଚେଡ଼ି କାକେରା ମଣ୍ଡା ପିଠା ଦ୍ରବ୍ୟେ ॥

## ଗ୍ରହଣ

ଗଣକେର ଗଣାଇବା ପଞ୍ଜିକା ଗ୍ରହଣେ ।
ରବି ଚନ୍ଦ୍ର ରାହୁ କେତୁ ପରସ୍ପର ଗ୍ରହଣେ ॥
ସମୟକୁ ଚାହିଁ ବାବାଙ୍କର ନୀତି ବଢ଼େ ।
ମନ୍ଦିର କବାଟ ପାକ ତ୍ୟାଗ ହେଲେ ପଡ଼େ ॥
ଗ୍ରହଣ ଆରମ୍ଭେ ସ୍ନାନ ପାଣି ଧୂପ ହୁଏ ।
ମୋକ୍ଷ ସ୍ନାନ ଅନ୍ତେ ନୀତି ଭୋଗ କରାଯାଏ ॥

## ଶାଢ଼ୀ ଲାଗି

ରିମା ରାଜ୍ୟ ରେବା ନଦୀ ତଟ ରାଜ ବଂଶ ।
ବଘେଲ ଗୋଷ୍ଠି କ୍ଷତ୍ରିୟ ବୀର ଅବତଂଶ ।।

ପୂର୍ବେ ସୂର୍ଯ୍ୟମଣି ଚନ୍ଦ୍ରମଣି ଭାଇ ବେନି ।
ଭ୍ରମଣକୁ ଆସିଥିଲେ ଉତ୍କଳ ମେଦିନୀ ।।

ସେତେବେଳେ ଥିଲା ଏହି ନିବିଡ଼ ଜଙ୍ଗଲ ।
ଥିଲେ ମିରିଗ ଶମ୍ବର ବାଘ ଭାଲୁ ଦଳ ।।

ବାଘ ଭାଲୁ ମାରି ଲୋକମାନଙ୍କୁ ମଣାଇଁ ।
ନୂଆ ରାଜ୍ୟ ବସାଇଲେ ଅରଣ୍ୟ ହଣାଇଁ ।।

ମୂଳକ ବାଘୁଆ ନୂଆଗଡ଼ ନାମ ଦେଲେ ।
ବାଉରୀ ଠାକୁରାଣୀଙ୍କି ଇଷ୍ଟଦେବୀ କଲେ ।।

ରାଜା ଇଷ୍ଟଦେବ ହେଲେ ପ୍ରଭୁ ଲଡ଼ୁକେଶ ।
ଚଉଷ୍ଠାଶ ରାଜ୍ୟ ଜିଣି କଲେ ବଡ଼ ଦେଶ ।।

ପୁରୁଷାନୁକ୍ରମେ ଲାଗିଥାଏ ଯୁଦ୍ଧ ବିର୍ଦ୍ଧି ।
ଜିଣିବାରୁ ନବ ଦୁର୍ଗ ନାମଟି ପ୍ରସିଦ୍ଧ ।।

ଗୋଟିଏ ରାଜ୍ୟ ଜିଣିଲା କ୍ଷଣି ଏକ ଶାଢ଼ୀ ।
ଲାଗି କରନ୍ତି ବାବାଙ୍କ ଶ୍ରୀଅଙ୍ଗେ ସଜାଡ଼ି ।।

ସେହି ଶାଢ଼ୀ ବିଦ୍ୟମାନ ରାଜ ମସ୍ତକରେ ।
ବନ୍ଧା ହୁଏ ସମାରୋହେ ରାଜଗାଦି ପରେ ।।

ଏହି ରୂପେ ନଅ ଶାଢ଼ୀ ନଅ ଗଡ଼ ଜିଣି ।
ହୂଳ କ୍ରମାଗତେ ଛୟାଗଡ଼ ନୃପମଣି ।।

ମହା ମହୋତ୍ସବେ ନିଜ ମୂର୍ଦ୍ଧାରେ ବନ୍ଧାଇ ।
ବୁଝୁଥାନ୍ତି ରାଜ୍ୟ ଭାର କନ୍ଧରେ ଲଦ୍ଧାଇ ।।

ଯେଉଁ ଦିନ ଯେଉଁ ରାଜ୍ୟ ହୋଇଯାଏ ଜିଣା ।
ଠାକୁରଙ୍କଠାରେ ଭୋଗ ଲାଗେ, ଅଙ୍କଳଣା ।।

ଶାଢ଼ୀ ପଡନିକି ଦେଇ ଥାଇ ଖଣ୍ଡାଦାର ।
ପ୍ରତ୍ନବସ୍ତୁ ରକ୍ଷାଥାଏ ବାବାଙ୍କ ଭଣ୍ଡାର ।।

ନୂଆ ଶାଢ଼ୀଏ ଲାଗିଲେ ଠାକୁରଙ୍କ ଅଙ୍ଗେ ।
ବଡ଼ଦେଉଳେ ପତନି ବାନ୍ଧନ୍ତି ସେ ସଙ୍ଗେ ।।

ଶିବରାତ୍ରି ଦିନ ଦେବ ଲାଗି ଆଦି ଶାଢ଼ୀ ।
ଆସିଥାନ୍ତି ରାଜା ରାଣୀ ଲଆସକୁ ଛାଡ଼ି ।।

ମୋହନ ମନ୍ଦିରେ ସେହି ଶାଢ଼ୀ ବାସି ଦିନେ ।
ଲାଗି ହୁଅନ୍ତି ନୃପତି ଆନନ୍ଦିତ ମନେ ।।

ବାଜଇ ଘଣ୍ଟ କାହାଳ ନାନାବିଧ ବାଦ୍ୟ ।
ପୁଲକିତ ହେଉଥାଇ ଦର୍ଶନେ ହୃଦ ।।

କରଯାଏ ସେ ସମୟେ କେତେ ଦାନଧ୍ୟାନ ।
ପ୍ରସାଦ ବିପ୍ର ଭୋଜନ ଯେ ବିଧି ବିଧାନ ।।

ଦୋଳ ପୂର୍ଣ୍ଣିମା ଦ୍ୱିତୀୟ ଶାଢ଼ୀ ଏ ରୂପରେ ।
ଲାଗି କରନ୍ତି ସେବକେ ଦୋଳ ମଣ୍ଡପରେ ।।

ତୃତୀୟ ଶାଢ଼ୀ ଅଶୋକ ଅଷ୍ଟମୀ ରଥରେ ।
ଚତୁର୍ଥ ଶୀତଳ ଷଷ୍ଠୀ ମୋହନ ଭିତରେ ।।

ପଞ୍ଚମ ଶାଢ଼ୀଟି ଅମାବାସ୍ୟା ସପ୍ତପୁରୀ ।
ଲାଗି ହୁଅଇ ଠାକୁର ମନ୍ଦିର ଗମ୍ଭୀରୀ ।।

ଯମ ଦ୍ୱିତୀୟାରେ ଷଷ୍ଠ ଶାଢ଼ୀଟି ବହନେ ।
ଲାଗି ହୁଅନ୍ତି ଠାକୁର ଯାହାରେ ମୋହନେ ।।

ଧନୁ ମକର ସଂକ୍ରାନ୍ତି ସପ୍ତ ଅଷ୍ଟ ଶାଢ଼ୀ ।
ଗମ୍ଭୀରରେ ଦେବ ଲାଗି ହୁଅନ୍ତି ସଜାଡ଼ି ।।

ବସନ୍ତ ପଞ୍ଚମୀ ଦିନ ନବ ଶାଢ଼ୀ ଶେଷ ।
ଦୋଳ ବେଦୀରେ ଗ୍ରହଣ କରନ୍ତି ମହେଶ ।।

ଯେଉଁ ଶାଢ଼ୀ ଦିନ ରାଜ ବିଜୟ ନହୁଏ ।
ବାସୀ ଦିନ ଶାଢ଼ୀ ନୃପ ନବରକୁ ଯାଏ ।।

ଛତିଶା ନିଯୋଗ ଯାଇ ଆଇ ଶାଢ଼ୀ ସାଙ୍ଗେ ।
ଉଆସେ ଲାଗି ହୁଅନ୍ତି ରାଜା ଉରମାଙ୍ଗେ ।।

ଏହିପରି ନବ ଶାଢ଼ୀ ଲାଗି ସମାପତି ।
ଶ୍ରୀ ଲଡ଼ୁକେଶ ପଦାରବିନ୍ଦେ ଦେଇ ମତି ।।

୫ମ ଭାଗ ସମାପ୍ତ

# ଷଷ୍ଠ ଭାଗ

## ଖଞ୍ଜା ବାଡ଼ି

ନୟାଗଡ଼ ନରମଣି ବଘେଲ ପାଇଛା ।
ବାବାଙ୍କ ପ୍ରତିଷ୍ଠା ବାରି ବଢାଇଲେ ଲଜା ।।
ଭୋଗ ରାଗ ଯାନି ଯାତ୍ରା ପୁଣ୍ୟ ପରବାଣି ।
ଚଳିବାକୁ ସମାରୋହେ ସମ୍ପାଦିଲେ ଆଣି ।।
ଖଞ୍ଜି ଦେଲେ ଜମି ବାରି ବହୁ ପରିମାଣେ ।
କୌଣସିଠାରେ ନଥିବା ଅପୂର୍ବ ବିଧାନେ ।।
ସତର ବାଇଶ ମଉଜାର ଜମି ବାରି ।
ସତ୍ତା ଜମା ପାଇବାକୁ ବାବା ଅଧିକାରୀ ।।
ଏ ବାହାରେ ନୂଆଗଡ଼ ରାଜ୍ୟେ ସବୁ ଗାଆଁ ।
ଅଛି କେତେ ବଗାଏଚ ବାବାଙ୍କର ନାଆଁ ।।
କାହିଁ କେତେ ପଣସ ଯେ ଆମ୍ବ ଆଦି ତୋଟା ।
ଏତେ ସେତେ କରିବକେ ସଂଖ୍ୟା ଗୋଟା ଗୋଟା ।।
ଲବେ ଲୋଭୀ ନୋହି ରଜା ଭକ୍ତିରେ ମଜ୍ଜିଲେ ।
ବହୁ ବିଲ ବାଡ଼ି ଡିହ ସେବକେ ଖଞ୍ଜିଲେ ।।
ରାଜ୍ୟ ରାଜ୍ୟାନ୍ତରେ କେତେ କେତେ ରଜା ପ୍ରଜା ।
ଠାକୁରଙ୍କୁ ବିଲ ବାରି କରିଛନ୍ତି ଖଞ୍ଜା ।।
ଏବେ କେତେ ଖଞ୍ଜା ବାଡ଼ି ହୋଇଲାଣି ଲୋପ ।
ମହଙ୍ଗା ପଡ଼ିବା ଯୋଗୁଁ ଯୁଗ ଅନୁରୂପ ।

## ମାଳି ସେବା

ପ୍ରଥମରେ ସେବାୟତ ଥିଲେ ମାଳାକାର ।
ନଥିଲେ ପ୍ରତିମା ଖାଲି ଲିଙ୍ଗ ଛତ୍ରାକାର ।।
ନଥିଲା ଏ ଭୋଗ ରାଗ କିଛି ହିଁ ସେ ଯାତ ।
କ୍ରମଶଃ ହେଲା ବାବାଙ୍କ ପ୍ରତିଷ୍ଠା ବିଖ୍ୟାତ ।।
ହରିହର ମୂରତି ଏ ପଣ୍ଡିତେ ବିଚାରି ।
ପ୍ରତିମା ରଖିବେ ସର୍ବ ଜନରେ ପ୍ରଚାରି ।।

କାଳକ୍ରମେ ସବୁ ସେବାୟତ ହେଲେ ଖଣ୍ଡା ।
ତେଣିକି ବହୁଳ ଭାବେ ହେଲା ପୂଜା ରିଜା ।।
ଆଗ ଲିଙ୍ଗ ଶ୍ରୀଅଙ୍ଗରେ ମାଜି ଢାଳି ଜଳ ।
ଚନ୍ଦନ ଘୋରି ଲଗାଇ ଦେବେ ଗୁରି ପଳ ।।
ବସ୍ତୁତ ବେଲ ପତର କୁସୁମ ତୁଳସୀ ।
ପିନ୍ଧାଇ ଝୀନ ବସନ ମଣ୍ଡିବେ ବିଳସି ।।
ସକଳ ଦେବ ଦେବୀଙ୍କି ସ୍ନାନ କରାଇବେ ।
ବାସି ଲାଗି ଫୁଲ ବେଲ ପତ୍ର ଫେଡ଼ାଇବେ ।।
ସମସ୍ତ ଦେଉଳେ ଲଗାଇବେ ତେଲ ଦୀପ ।
ଅଖଣ୍ଡିତ ଦୀପ ଜଳେ ବାବାଙ୍କ ସମୀପ ।।
ଭୋଗ ଆସିବା ବାଟରେ ପାଣି ପକାଇବେ ।
ଧୂପରେ ଘଣ୍ଟ ବଜାଇ ଛତି ଟେକାଇବେ ।।
ବାନ୍ଧିବେ ନେତ ପତାକା ବଡ଼ଦେଉଳରେ ।
ଜଳାଇବେ ମହାଦୀପ ବଡ଼ ଦେଉଳରେ ।।
ଦର୍ଶକ ଯାତ୍ରୀମାନଙ୍କୁ ପାଦୋଦକ ଦେବେ ।
ପ୍ରତିଦିନ ଅବକାଶ ପଞ୍ଚାମୃତ ଢଳବାଟୀ ନେବେ ।।
ମନ୍ଦିର ଝାଡ଼ୁ କରିବେ ପୂଜି ରନ୍ଧା ପୁଡ଼ା ।
ଚଉବୋଳ ଧରି ଦେବେ ବୁଲାଇବେ [illegible] ।।
ରୋଷଘରୁ ନିଃସଂଖୁଡ଼ି ଭୋଗ ଢୋଇବେ ।
ଖଟ ଶେଜ ସଜାଇଣ କଠାଉ ଥୋଇବେ ।।
ଠାଆ ପିଢ଼ା କରିବେ ସେ ବାସନ ମାଜିବେ ।
ନିଃସଂଖୁଡ଼ି ଭୋଗ ଧରି ରଜମୂରୀ ଯିବେ ।।
ପତାକା ଛତି ତରସ ଚାମର ଆଲଟ ।
ଧରିବେ ଯାତ୍ରାମାନଙ୍କେ ବଜାଇବେ ଘଣ୍ଟ ।।
ସବୁ ଦିନେ ନିଃସଂଖୁଡ଼ି ସଂଖୁଡ଼ି ପ୍ରସାଦ ।
ଚନ୍ଦ ଖେଇ ନେଇ ମନେ ହୁଅନ୍ତି ଆହ୍ଲାଦ ।।

ଯଜମାନ ମାନଙ୍କର ପଞ୍ଚମୁଖ ଭୋଗ ।
ପୂଜା କରନ୍ତି ମାଳିଏ ବାବା ଲିଙ୍ଗ ଆଗ ।।

ପକାଇ କବାଟ ତାଙ୍କ ଦୁଆର ଠୁକିବେ ।
ଗଡିରେ କରିବାପାଇଁ ଦେଉଳେ ଢୁକିବେ ।।

ଦେଶ ଦେଶାନ୍ତରେ ଜଣେ ମହିମା ପ୍ରଚାର ।
କରିବାରୁ ଜମିବାରି ମିଳିଛି ଅପାର ।।

ପତାକା ଛତା ତରସ ଆଲଟ ଚାମର ।
କାହାଳ ମେଘ ଡମ୍ବରୁ ଭୂଷଣ ଅମ୍ବର ।।

ନାନାବିଧ ପାତ୍ର ଟଙ୍କା କଉଡ଼ି ଯାବତ ।
ଯାଚଣା ପନି ପରିବା ଦିଅନ୍ତି ସମସ୍ତ ।।

ସେବାଲାଗି ଜମିବାରି ବହୁ ପରିମିତେ ।
ଭୋଗ କରୁଛନ୍ତି ମାଳି କୁଳ କ୍ରମାଗତେ ।।

## ପଣ୍ଡା ସେବା

ପଣ୍ଡା ଲିଙ୍ଗ ଶୁଦ୍ଧି ପ୍ରାତଃ ଅବକାଶ କରି ।
ସକାଳ ପ୍ରତିମା ଶାଳଗ୍ରାମ ସ୍ନାନ ସାରି ।।

ବଲ୍ଲଭ ତ୍ରିକାଳ ଧୂପ ତେର ଚତୁଃସମ ।
ବଡ଼ ସିଂହାର ପୂଜାଦି କରିବେ ସୁକ୍ଷମ ।।

ପହଣ୍ଡି ଚିହ୍ନେ କରଇ ରଥେ ଚଉଦୋଳେ ।
ଚାମର ପକାଉଥିବେ ଦେବେ ଲବ ଖେଳେ ।।

ନିଃସଂଖୁଡ଼ି ସଂଖୁଡ଼ି ଯେ ଯଜମାନୀ ଭୋଗ ।
ପୂଜା କରିବାକୁ ପଡ଼େ ପଣ୍ଡାଙ୍କର ଯୋଗ ।।

ଯାତ୍ରୀ ଦର୍ଶନ କରଇ ପ୍ରସାଦକୁ ଦେବେ ।
ଦଇନିକ ଚଣ୍ଡଖେଇ ବଡ଼ ଭାଗ ନେବେ ।।

ଚନ୍ଦନ ଗଚେରୀ ଆଦି ଯାହାମାନଙ୍କରେ ।
ଗ୍ୱାଳି ଧୂପ କରି ପୂଜା କରନ୍ତି ଦୁଆରେ ।।

ସେବା ଲାଗି ଜମିବାରି ବହୁ ପରିମିତେ ।
ଭୋଗ କରୁଛନ୍ତି ପଣ୍ଡା କୁଳ କ୍ରମାଗତେ ।।

## ବ୍ରାହ୍ମଣ (ସୁଆର) ସୁପକାର ସେବା

ରନ୍ଧିବେ ସଂଖୁଡ଼ି ରେଷେ ବ୍ରାହ୍ମଣ ସୁଆରେ ।
ଛେକ ଥୋଇବେ ମନ୍ଦିର ଭିତର ଦୁଆରେ ।।

ଧୂପ ଦୀପ ଆରତ୍ରିକ ପଣ୍ଡା ହସ୍ତେ ଦେବେ ।
ବନ୍ଦାଣ ଶେଷେ ଆଳଟି ପଣ୍ଡା କରୁଁ ନେବେ ।।

ଲିଭାଇଣ ପରୀକ୍ଷଙ୍କେ କରିବେ ଅର୍ପଣ ।
ଛଡ଼ି ବାଡ଼ି ଧରିଣ ସେ କରିବେ ଗ୍ରହଣ ।।

ନିତି ପୂଜା ବସାଇବେ ପାଳି ଅନୁସାରେ ।
ମୁଣ୍ଡକରେ ଚିତା ଦେବେ ଭୋଗ ବଢ଼ାଠାରେ ।।

ପହିଲି ଭୋଗକୁ ଘେନି ଯିବେ ରଜବାଟୀ ।
ପ୍ରତି ଦିନ ଚଣ୍ଡ ଖେଇ ନେବେ ଭାଗ ବାଣ୍ଟି ।।

ସେବା ଲଗି ଜମିବାରି ବହୁ ପରିମତେ ।
ଭୋଗ କରନ୍ତି ସୁଆର କୁଳ କ୍ରମାଗତେ ।।

## ଶୂଦ୍ର (ଗୁଡ଼ିଆ) ସୁଆର ସେବା

ଗୁଡିଆ ସୁଆର ସବୁ ନିଃସଙ୍ଖୁଡ଼ି ଭୋଗ ।
ବଲ୍ଲଭ ଠାବରୁ ବଡ଼ସିଂହାର ନିଯୋଗ ।।
ଯାତ୍ରାରେ ଝଟଣି ରେଷ ମନ୍ଦିରେ ତିଆରି ।
ଆଣନ୍ତି ବାବାଙ୍କ ଛାମୁ ନିଆରି ନିଆରି ।।
ବଲ୍ଲଭକୁ ଘିଅ ଲିଆ ଗୁଡ଼ ଶାଚି ଆଦି ।
ଜିନିଷ ନିଜ କମରୁ ଦିଅନ୍ତି ସମାଡ଼ି ।।
ଏଥିଲାଗି ଜମିଦାରି ବହୁ ପରିମିତେ ।
ଭୋଗ କରନ୍ତି ଗୁଡ଼ିଆ କୁଳ କ୍ରମାଗତେ ।।

## ପ୍ରତିହାରୀ ସେବା

ତୁଣ୍ଡି ବାନ୍ଧି ରେଷୁଁ ଭୋଗ ଦୁଆରେ ଧରନ୍ତେ ।
ପ୍ରତିହାରୀ ବେତ ଧରି ଗମନ୍ତି ପୁରତେ ।।

ପୂର୍ବବନ୍ତ ମନ୍ଦିରକୁ ଶୋଧା କରିଥାନ୍ତି ।
ଆଢ଼ୋ ଆଢ଼ୋ ଡାକ ଦେଇ ଭିତରେ ଯାଆନ୍ତି ।।

ଭୋଗ ସରିଲେ ପ୍ରସାଦ କରନ୍ତି ବିକିରି ।
ବଡ଼ ଥାଳୀ ବାଲ୍ୟ ଭୀଡା ଦ୍ୟନ୍ତି ଗୁଡ଼ାକରି ॥

ହାଡ଼ି ସଜାଡ଼ି ଖଡ଼ିକା ଦାନ୍ତକାଠି ଆଣି ।
ଖଣ୍ଡଖିଆ ଭିଣା ଦେଇ ଥାଇ ତୁଳା ଭିଣି ॥

ଖଡ଼ିକାରେ ଆଳତିର ତୁଳାକୁ ଗୁଡ଼ାଇ ।
ପର୍ଚ୍ଛହାରୀ ଆଣେ ଦାନ୍ତକାଠିକି ବାଢ଼ାଇ ॥

ଏକା କାମେ ଦୁଇଗୋଟି କମି ଅଛି ଖଣ୍ଡା ।
ଭଲେ କାମ ଚଳିବାକୁ କଳିଛନ୍ତି ରଜା ।

ଅଗ୍ନି ଉତ୍ସବର ବାସିଦିନ ଧରି ଇଷ୍ଟ ।
ପ୍ରାସନ ଘୃତ ନଡ଼ିଆ ନିଏ ରଜଦେଶ ॥

ଜଗନ୍ନାଥଙ୍କର ସର୍ବ କାର୍ଯ୍ୟ ପ୍ରତିହାରୀ ।
କରି ଚଣ୍ଡ ଖେଇ ନେଇ ଯାନ୍ତି ନିଜ ପୁରୀ ॥

ବୁଢ଼ ଯାତ୍ରାରେ ଠାକୁର ଆଗେ ପୂଜା ବଡ଼ା ।
ଟେର ବାଡ଼ ଧରିକରି ହୋଇଥାନ୍ତି ଛିଡ଼ା ॥

ସେବା ଲାଗି କର୍ମଚାରି ବହୁ ପରିମିତେ ।
ଭୋଗ କରେ ପ୍ରତିହାରୀ କୂଳ କ୍ରମାଗତେ ॥

## ପରୀକ୍ଷକ (ପରିଛା)

ମନ୍ଦିରରେ ପରୀକ୍ଷକ ରଜ ପ୍ରତିନିଧି ।
ସୁନା ରୂପା ଛଡ଼ି ବାଡ଼ି ଧରିବାର ବିଧି ॥

ତ୍ରିକାଳ ଧୂପରେ ପାଟ ବୃଷଭ ପଟ୍ଟରେ ।
ଛଡ଼ିକରେ ଛିଡ଼ା ହୋଇଥାନ୍ତି ତ୍ରିକଚ୍ଛରେ ॥

ପଣ୍ଡା ବନ୍ଦାଇଲେ ଧୂପ ଶେଷେ ଆଳତିକି ।
ସୁଆର ଆଣନ୍ତି ତାହା ପରୀକ୍ଷା କତିକି ॥

ଲଭାନ୍ତେ ଧୂପ ଆଘ୍ରାଣ ପରିଛା କରନ୍ତି ।
ରଜାଙ୍କ ନାମେ ଆଶାଷ ବାକ୍ୟ ଉଚ୍ଚାରନ୍ତି ॥

ବେଢ଼ା ପରିକ୍ରମା ଯାତେ ଧରି ଛଡ଼ି ବାଡ଼ି ।
ବିମାନ ଆଗେ ପରିଛା ଯାନ୍ତି ପାଦ କାଢ଼ି ॥

ଯେତେବେଳେ ଯାଇଁ ଦିଅଁ ଦେଉଳେ ପଶନ୍ତି ।
ପଛେ ଚଉଦୋଳ ଆଗେ ପରୀକ୍ଷା ଆସନ୍ତି ॥

ଯେଉଁ ଦିନ ରଜଗୃହେ ଯାଏ ଦେବ ଶାଢ଼ୀ ।
ପରିଛା ଯାଆନ୍ତି ଆଗେ ଧରି ଛଡ଼ି ବାଡ଼ି ॥

ନିତି ପାଆନ୍ତି ବାବାଙ୍କ ପୂଜା ପରସାଦ ।
ଦେଖନ୍ତି ସେବକ କାର୍ଯ୍ୟ ନବହି ବିଷାଦ ॥

ଏଥିପାଇଁକି ମାସିକ ବେତନ ଉଚିତେ ।
ଭୋଗ କରନ୍ତି ପରୀକ୍ଷା ଆନନ୍ଦିତ ଚିରେ ॥

## ପୁରୋହିତ

ପୁରୋହିତ ପ୍ରତିଦିନ ପ୍ରାତଃ କାଳେ ଶେଷେ ।
ହୋମ କଲ ପରେ ଚୁଲି ଲଗାଇ ନିମିଷେ ॥

ମଧ୍ୟାହ୍ନ କାଳେ କରନ୍ତି କ୍ଷୀର ଅଭିଷେକ ।
ବିବାହ ରଥ ପ୍ରତିଷ୍ଠା ସଂସାର ଯେତେକ ॥

ଏଥିପାଇଁ କର୍ମଚାରି କିଛି ପରିମିତେ ।
ଭୋଗ କରନ୍ତି ପୁରୋଧା କୁଳ କ୍ରମାଗତେ ॥

## ଚର୍ଚ୍ଚାଯୁକ୍ତ

ମଙ୍ଗଳ ଆଳତିଠାରୁ ଧୂପ ତିନିକାଳ ।
ସନ୍ଧ୍ୟାଳତି ଚତୁଃସମ ସେ ବଡ଼ସିଂହାର ॥

ସୁବିଧା ଅସୁବିଧା ଯେ ଭୋଗ ଲଣାଧିକ ।
ଚରସ୍ଥଯତ ବୁଝନ୍ତି ସବୁ କରି ଠିକ ॥

ଏଥି ପାଇଁକି ପାଆନ୍ତି ମାସିକ ବେତନ ।
ପ୍ରସାଦ ପାଇ କର୍ତ୍ତବ୍ୟ କରନ୍ତି ଯତନ ॥

## ଦ୍ୱାରୀ (ପାଇକ) ସେବା

ପୂର୍ବ ପଶ୍ଚିମ ଦକ୍ଷିଣ ସେ ଉତ୍ତର ଦିଗେ ।
ରହି ଦ୍ୱାରୀ ଜଗିଥାନ୍ତି ଦିବା ନିଶି ଭାଗେ ॥

କବାଟ ଫିଟିବାଠାରୁ ପଡ଼ିବା ପର୍ଯ୍ୟନ୍ତ ।
ଅନାସ୍ଥର ହେବା ଲାଗି ଥାନ୍ତି ଅବିରତ ॥
କେବା ମଳ ମୂତ୍ର ତ୍ୟାଗ କେ ଛେପ ଖଂକାର ।
ପଶିଗଲେ ବେଢ଼ା ମଧ୍ୟେ ଘୁଷୁରି କୁକୁର ॥
କ୍ଷତି ପୂରଣୀ ଅପ୍ରାଇ ହୁଏ ତତ୍‌କ୍ଷଣ ।
ପଞ୍ଚାମୃତ ସିଞ୍ଚା ହୋମ ଦେବ ମହାସ୍ନାନ ॥
ଏଥିପାଇଁ କି ପାଇକେ ପାଆନ୍ତି ବେତନ ।
ପ୍ରସାଦ ପାଇ କର୍ତ୍ତବ୍ୟ କରନ୍ତି ଯତନ ॥

## ଗଉଡ଼ ସେବା

ଗଉଡ଼େ ଲହୁଣୀ ଛେନା ଘିଅ ଦୁଧ ଦହି ।
ଆଣନ୍ତି ଯଥା ସମୟେ କନ୍ଧେ ଭାର ବହି ॥
ଯେତେବେଳେ ଯେଉଁଥିରେ ଯାହା ଦରକାର ।
କରନ୍ତି ସେବକେ କାମ ଜାଣି ବାରବାର ॥
ଏଥିଲାଗି ଜମି ବାରି ବହୁ ପରିମିତ ।
ଭୋଗ କରନ୍ତି ଗୋପାଳେ କୁଳ କ୍ରମାଗତେ ॥

## ନାପିତ (ଭଣ୍ଡାରି) ସେବା

ଲଗାଇ ଯୋଡ଼ା ମସାଲ ନିତି ସଞ୍ଜ ହେଲେ ।
ଠାକୁରଙ୍କ ଭୋଗ ଆସେ ଯାଏ ରହେ ଗେଲେ ଗେଲେ ॥
ଧୂପ ଶେଷ ହେବା ଯାଏଁ ସେ ଦେଖାଇଥାଏ ।
ଯାନି ଯାତ୍ରାରେ ମସାଲ ଲଗାଇଣ ଯାଏ ॥
ପଲ୍ଲବ ସମିଧ କରକୋଳି ପତ୍ର ଦୂବ ।
ବିବାହ ଆଦି କାର୍ଯ୍ୟରେ ଆଣି ଦିଏ ସର୍ବ ॥
ଏଥିଲାଗି ଜମି ବାରି ବହୁ ପରିମିତେ ।
ଭୋଗ କରନ୍ତି ନାପିତ କୁଳ କ୍ରମାଗତେ ॥

## ତେଲି ସେବା

ତେଲି ଆଣେ ଧୂଆ ରାଶି ତେଲ ପ୍ରତିଦିନ ।
ସଞ୍ଜ ବେଳେ ବାବା ଜିଉ ହୁଅନ୍ତି ମର୍ଦ୍ଦନ ॥
ଜଳେ ଦୀପାବଳି ସବୁ ଦେଉଳ ବଣାରେ ।
ବେଢ଼ା ଯାତ୍ରାରେ ନଅର ବଳିତା ଟେଣାରେ ॥
ଏଥିଲାଗି ଜମି ବାରି ବହୁ ପରିମିତେ ।
ଭୋଗ କରୁଛନ୍ତି ତେଲି କୁଳ କ୍ରମାଗତେ ॥

## କୁମ୍ଭାର ସେବା

ହାଣ୍ଡି ଆଟିକା ପତୁଲି ଗଢ଼ି ବଢ଼ା ସରା ।
ନିତି ଘର ଧରି ଆସେ କୁମ୍ଭାର ବିଚରା ॥
ଅବକାଶଠାରୁ ବଡ଼ସିଂହାର ପର୍ଯ୍ୟନ୍ତ ।
ପ୍ରତ୍ୟେକ କାର୍ଯ୍ୟରେ ଲାଗୁଥାଇ ମାଟି ପାତ୍ର ॥
ଏଥିଲାଗି ଜମି ବାରି ବହୁ ପରିମିତେ ।
ଭୋଗ କରନ୍ତି କୁମ୍ଭାରେ କୁଳ କ୍ରମାଗତେ ॥

## ଉନ୍ତ୍ରି (କାହାଳିଆ) ସେବା

ପ୍ରଭାତ ମଙ୍ଗଳାବତୀ ତ୍ରିକାଳ ଧୂପରେ ।
ଟେଟାଫିଟା ଚତୁଃ ସମ ସେ ବଡ଼ସିଂହାରେ ॥
ରଥେ ଚାପେ ବେଢ଼ା ବୁଲ ଯାତ୍ରାମାନଙ୍କରେ ।
କାହାଳୀ ବଜାନ୍ତି ତନ୍ତ୍ରି ଠାକୁର ପାଖରେ ॥
ବରଷକରେ ଖଟଣି ଲାଗି ଲୁଗାମାନ ।
ଦିଅନ୍ତି ତନ୍ତ୍ରି ତିଆରି ହୋଇ ସାବଧାନ ॥
ପ୍ରତିଦିନ ଚନ୍ଦ ଖେଇ ନିଜ ଭାଗ ପାନ୍ତି ।
ସଂଖୁଡ଼ି ପ୍ରସାଦ ନେଇ ସନ୍ତୋଷରେ ଯାନ୍ତି ॥
ଏଥିପାଇଁ ଜମି ବାରି ବହୁ ପରିମିତେ ।
ଭୋଗ କରୁଛନ୍ତି ତନ୍ତ୍ରି କୁଳ କ୍ରମାଗତେ ॥

## ବ୍ରାହ୍ମଣ (ଗୀତଗୋବିନ୍ଦ) ସେବା

ପ୍ରତି ରାତି ପହରକେ ଚତୁଃ ସମ ନୀତି ।
ଗୀତଗୋବିନ୍ଦ ଶୁଣନ୍ତି ବ୍ରାହ୍ମଣେକ ନିତି ॥
ଉଦୀୟମାନ ରାଜାଙ୍କ ନାମରେ ଆଶିଷ ।
ପ୍ରଦାନି ଯାଆନ୍ତେ ବାସେ ହୋଇଣ ସଂତୋଷ ॥

ଏଥିଲାଗି ଜମି ବାରି ବହୁ ପରିମିତେ ।
ଭୋଗ କରନ୍ତି ବ୍ରାହ୍ମଣ କୁଳ କ୍ରମାଗତେ ॥

## ପର୍ବ ପୂଜକ

ଆଶ୍ୱିନ ମାସରେ ଦେବୀ ପର୍ବ ଷୋଳ ଦିନ ।
ତ୍ରିକାଳ ପୂଜା କରନ୍ତି ଶ୍ରୋତ୍ରିୟ ବ୍ରାହ୍ମଣ ॥
କେବଳ ହବିଷ୍ୟ ଖର୍ଚ୍ଚ ଦିଏ ଦେବୋତ୍ତର ।
ଚଣ୍ଡ ଖେଇ ନେଇ କାର୍ଯ୍ୟ କରନ୍ତି ତତ୍ପର ॥
ଦକ୍ଷିଣାପାଇଁ କି ଜମି ବହୁ ପରିମିତେ ।
ଭୋଗ କରନ୍ତି ପୂଜକ କୁଳ କ୍ରମାଗତେ ॥

## ଚଣ୍ଡୀ ପାଠକ

ଆଶ୍ୱିନ ମାସରେ ଦେବୀ ପର୍ବ ଷୋଳଦିନ ।
ଚଣ୍ଡିକା ସ୍ତୋତ୍ର ପଢ଼ନ୍ତି ତାନ୍ତ୍ରିକ ବ୍ରାହ୍ମଣ ॥
କେବଳ ହବିଷ୍ୟ ଖର୍ଚ୍ଚ ଦିଏ ଦେବୋତ୍ତର ।
ଚଣ୍ଡ ଖେଇ ନେଇ କାର୍ଯ୍ୟ କରନ୍ତି ତତ୍ପର ॥
ଦକ୍ଷିଣା ପାଇଁକି ଜମି ବହୁ ପରିମିତେ ।
ଭୋଗନ୍ତି ଚଣ୍ଡୀ ପାଠକ କୁଳ କ୍ରମାଗତେ ॥

## ପୁଟୁଳିବଣିଆ (ପାନେରୀ) ସେବା

ପାନର ତ୍ରିକାଳ ଧୂପ ଛମୁକ ତାମ୍ବୁଳ ।
ଆଣି ଯୋଗାଏ ଲବଙ୍ଗ ଏଳା ଜାଡିଫଳ ॥
ଏଥିପାଇଁ ଜମି ବାରି ବହୁ ପରିମିତେ ।
ଭୋଗ କରନ୍ତି ପୁଟୁଳି ବଣିଆ ନାଇତେ ॥

## ପାଟରା ସେବା

ପାଟର ପାଟ ପଡନି ନେତ ଯେତେ ଲେଡ଼ା ।
ଶାଢ଼ୀ ଆଦି ବରଷକେ ଦେଉଥାଇ ଜୋଡ଼ା ॥
ଏଥିପାଇଁ ଜମିବାରି ବହୁ ପରିମିତେ ।
ଭୋଗ କରନ୍ତି ପାଟରା କୁଳ କ୍ରମାଗତେ ॥

## ବଣିଆ ସେବା

ପୌଷ ଶୁକ୍ଳା ପୂର୍ଣ୍ଣମୀରେ ସୁବର୍ଣ୍ଣ ପଲଟା ।
ବରଷକେ ବେନିବାର ନୂଆ ଗଢ଼ାଇଣ ॥
ସକଳ ଦେବ ଦେବୀଙ୍କ ଲାଗି ଅଳଙ୍କାର ।
ଆଣି ଦିଅନ୍ତି ବଣିଆ ବଗତ ପ୍ରକାର ॥
ଏଥିପାଇଁ ଜମିବାରି ବହୁ ପରିମିତେ ।
ଭୋଗ କରନ୍ତି ବଣିଆ କୁଳ କ୍ରମାଗତେ ॥

## ବଢ଼େଇ ସେବା

ଚୈତ୍ରମାସେ ଦେବରଥ ଗଢ଼ନ୍ତି ବଢ଼େଇ ।
ବଡ଼ କାଠମାନଙ୍କରୁ ବକଳ ଛଡ଼ାଇ ॥
ବୈଶାଖ ମାସେ ଚନ୍ଦନ ଘୂପ କି ସୁନ୍ଦର ।
ଆଷାଢ଼ରେ ଗୁଣ୍ଡିଚା ତିନି ଚହୁ ବର ॥
ଏ ବାହାରେ ଠାକୁରଙ୍କ ଯେତେକ ବିମାନ ।
ନୂଆ ତିଆରି କରନ୍ତି ଭଙ୍ଗା ସୁଦ୍ଧାମାନ ॥
ଖଟ ପଲଙ୍କ କବାଟ ପେଟେରେ ପୁଟୁଳି ।
ତିଆରନ୍ତି ଘର ଦ୍ୱାର ପଞ୍ଜର ଖଟୁଳି ॥
ଏଥିଲାଗି ଜମିବାରି ବହୁ ପରିମିତେ ।
ଭୋଗ କରନ୍ତି ବଢ଼େଇ କୁଳ କ୍ରମାଗତେ ॥

## କମାର ସେବା

ରଥ କଣ୍ଟା, ଅଟରଗି କିଳଣି କୋଇପ ।
ଶାବଳ, କୋଡ଼ି, କୁରାଢ଼ୀ, କତୁରୀ, ଖୋଳପ ॥
ବର୍ଷକୁ ବର୍ଷ ତିଆରୀ ଦିଅନ୍ତି କମାର ।
ରଖାଯାଇଥାଏ କରି ଭଣ୍ଡାରେ ସୁମାର ॥
ଏଥିଲାଗି ଜମିବାରି ବହୁ ପରିମିତେ ।
ଭୋଗ କରନ୍ତି କମାର କୁଳ କ୍ରମାଗତେ ॥

## ଚଷା ସେବା

ଯାନି ଯାତ୍ରାମାନଙ୍କରେ ଠାକୁର ବିମାନ ।
ବହନ୍ତି ଚଷା ସେବକ ଲାଗି ଲାଗି ଜଣ ॥

ଦିଅନ୍ତ ଖୁରକ ମୁଗ ବିରୀ ଯେ ଗହମ ।
ଚୁଡ଼ା ନଡ଼ିଆ ନବାତ ଗୁଡ଼ କରି ସମ ॥
ପାଆନ୍ତି ଦେବ ପ୍ରସାଦ ନିଜ ନିଜ ଭାଗ ।
କାମ କରୁଥାନ୍ତି ମନେ ବହି ଅନୁରାଗ ॥
ଏଥିପାଇଁ ଜମିବାଡ଼ି ବହୁ ପରିମିତେ ।
ଭୋଗ କରନ୍ତି କୃଷକ କୁଳ କ୍ରମାଗତେ ॥

## ଚିତ୍ରକାର

ଜାଗର ପୂର୍ବରୁ ପ୍ରତିବର୍ଷ ଚିତ୍ରକାରେ ।
ମନ୍ଦିର ମୂର୍ତ୍ତି ଚିତ୍ରନ୍ତି ଅତି ଚମତ୍କାର ॥
କାଷ୍ଠର ବୃଷଭ ସିଂହ ଯେତେକ ମୂରତି ।
ନାନା ବରଣେ କରନ୍ତି ଚିତ୍ରକୁ କରନ୍ତି ॥
ଜଗନ୍ନାଥ ବଳଭଦ୍ର ଭଦ୍ରା ଚକ୍ର ଚିତ୍ର ।
କରନ୍ତି ଆଷାଢ଼ ମାସେ ଅତୀବ ବିଚିତ୍ର ॥
ଏଥିପାଇଁ ଜମିବାଡ଼ି ବହୁ ପରିମିତେ ।
ଭୋଗନ୍ତି ସେ ଚିତ୍ରକାରକୁଳ କ୍ରମାଗତେ ॥

## ବେଠିଆ ସେବା

ବେଢ଼ା ଭିତରେ ଝାଟନ୍ତି ସକାଳୁ ବେଠିଆ ।
ଝାଟୁଆ ପହଁର ଧରି କ୍ଷଣେ ନୋହି ଠିଆ ॥
ପଡ଼ିଥାଇ ପାନପିକ ଯାତ୍ରୀମାନଙ୍କରେ ।
ଚୂନପାଣି ପକାଇ ତା ଛଡ଼ାନ୍ତି ସତ୍ବରେ ॥
ଝୁଲି ପତ୍ର ଆଦି କେତେ ମଇଳା ଅଳିଆ ।
ପାଣି ସିଞ୍ଚି ସଫା କରୁଥାନ୍ତି ସଅଳିଆ ॥
ପ୍ରତ୍ୟେକ ଦିନ ପାଆନ୍ତି ବାବାଙ୍କ ପ୍ରସାଦ ।
କାମ କରୁଥାନ୍ତି ମନେ ନବହି ବିଷାଦ ॥
ଏଥିଲାଗି ଜମିବାଡ଼ି ବହୁ ପରିମିତେ ।
ଭୋଗ କରନ୍ତି ବେଠିଆ କୁଳ କ୍ରମାଗତେ ॥

## ବାଣକାର

ଚନ୍ଦର ଉଦିଆ ବାଣକାର ମହାଦୀପ ।
ଦ୍ୟନ୍ତି ପ୍ରତି ଚତୁର୍ଦ୍ଦଶୀ ମନ୍ଦିର ସମୀପ ॥
ବରଷକେ ବଡ଼ ବଡ଼ ଯାତ୍ରାମାନଙ୍କରେ ।
ବିବିଧ ବାଣ ମାରନ୍ତି ଆଣି ବାଣକାରେ ॥
ଏଥିଲାଗି ଜମିବାଡ଼ି ବହୁ ପରିମିତେ ।
ଭୋଗ କରେ ବାଣକାରେ କୁଳ କ୍ରମାଗତେ ॥

## କାଠୁରିଆ

କାଠୁରିଆ କାଠ ଯେତେ ଜାଳେଣୀ ଯୋଗାଏ ।
ରଥ କାଠ ପଟା ଆଦି ବେଳ ଜାଣି ଦିଏ ॥
ଏଥିପାଇଁ ଜମିବାଡ଼ି ବହୁ ପରିମିତେ ।
ଭୋଗ କରେ କାଠୁରିଆ କୁଳ କ୍ରମାଗତେ ॥

## ଚୂନରା

ଶିବରାତ୍ରି ପୂର୍ବରୁ କରଇ ଚୂନରା ।
ମନ୍ଦିର ପାଚେରୀ ଝାଟି ସଫେଇ ସୁତୁରା ॥
ଭିତରେ ବାହାରେ ଦିଏ ଚୂନ ଦୂଇପୋଛ ।
ଦୂରକୁ ଦିଶଇ ଧୋବ ଦାଉ ଦାଉ ସ୍ବଚ୍ଛ ॥
ଏଥିପାଇଁ ଜମିବାଡ଼ି ବହୁ ପରିମିତେ ।
ଭୋଗ କରନ୍ତି ଚୂନରା କୁଳ କ୍ରମାଗତେ ॥

## କନ୍ଧସେବା

ବନଚର କନ୍ଧମାନେ ପରିବା ଯାବତ ।
ଯୋଗାନ୍ତି ବର୍ଷକ ଫଳ ମୂଳ ଋତଜାତ ॥
ଶାଗ ପତ୍ର ସିଆଳିର ଖଲି ଠୋଲା ଦନା ।
ଦିଅନ୍ତି ଦିନକୁ ଦିନ କରି ସମ୍ପାଦନା ॥
ଏଥିଲାଗି ଜମିବାଡ଼ି ବହୁ ପରିମିତେ ।
ଭୋଗ କରୁଛନ୍ତି କନ୍ଧ କୁଳ କ୍ରମାଗତେ ॥

## ଚନ୍ଦନପୁରୀ ପଣ୍ଡା

ଚନ୍ଦନପୁରୀ ପଣ୍ଡାଏ କର୍ପୂର ଚନ୍ଦନ ।
କୁଙ୍କୁମ କସ୍ତୁରୀ ଆଦି ଦ୍ୟନ୍ତି ପ୍ରତିଦିନ ॥
ତେଜପତ୍ର ଡାଳଚିନି ଜୀରକ ମରିଚ ।
ଲବଙ୍ଗ ଏଲା ମସଲା ନିତି ହୁଏ ଖର୍ଚ୍ଚ ॥
ଏଥି ଲାଗି ଜମିବାଡ଼ି ବହୁ ପରିମିତେ ।
ଭୋଗ କରନ୍ତି ପଣ୍ଡାଏ କୁଳ କ୍ରମାଗତେ ॥

## ତୀର୍ଥ ଯାତ୍ରୀ

ଚତୁଃସମ ନିତୀରେଟି ନିତି ଗଙ୍ଗୋଦକ ।
ଦିଆଯାଏ ବାବା ଜିଉ ଲିଙ୍ଗର ମସ୍ତକ ॥
ବରଷକେ ବେନିବାର ତୀର୍ଥ ଯାତ୍ରୀ ବିପ୍ର ।
ଆଣି ଦେଇଥାନ୍ତି ମୁଦା କାଚପାତ୍ରେ କ୍ଷୀପ୍ର ॥
ଏଥିପାଇଁ ଜମିବାଡ଼ି ବହୁ ପରିମିତେ ।
ଭୋଗ କରେ ତୀର୍ଥ ଯାତ୍ରୀ କୁଳ କ୍ରମାଗତେ ॥

## ଧୋବା ସେବା

ନିତିଲାଗି ବାସି ବାସ ନେଇଣ ସକାଳେ ।
କାଚିସଫା କରି ସେଠୀ ଆଣେ ସଞ୍ଜବେଳେ ॥
ଜଳିବାକୁ ବଳିତାକୁ ସର୍ବଦା ଯୋଗାଏ ।
ନଅର ବତୀକି ଯାତ୍ରା ମାନଙ୍କରେଦିଏ ।
ପର୍ବ ପର୍ବାଣି ସର୍ବାଙ୍ଗ ଧୂପ ଭୋଗପାଏ ॥
ଏଥିପାଇଁ ଜମି ବାଡ଼ି ବହୁ ପରିମିତେ ।
ଭୋଗ କରନ୍ତି ସେଠିଏ କୁଳ କ୍ରମାଗତେ ॥

## ମେହେନ୍ତର ସେବା

ମେହେନ୍ତର ଖରକନ୍ତି ବେଢ଼ାର ବାହାର ।
ଘାସବର୍ଣ୍ଣ ସଫାକରି ଘରି ପାର୍ଶ୍ୱରେ ॥
ପ୍ରତ୍ୟହ ମହିଳା ସଫା ସୁତଗ କରନ୍ତି ।
ଯାତ୍ରାରେ ବାଜା ବଜାଇ ଆଗରେ ଚଳନ୍ତି ॥

ପର୍ବ ପର୍ବାଣି ସର୍ବାଙ୍ଗ ଧୂପ ଭୋଗପାନ୍ତି ।
ସନ୍ତୋଷରେ ସବୁ ଦିନ କାମ କରୁଥାନ୍ତି ॥
ଏଥିଲାଗି ଜମିବାଡ଼ି ବହୁ ପରିମିତେ ।
ଭୋଗ କରନ୍ତି ହାଡ଼ିଏ କୁଳ କ୍ରମାଗତେ ॥

## ତିଅର ସେବା

ପାର୍ବୀତଙ୍କ ପର୍ବ ବିଧି ଆଶ୍ୱିନ ମାସରେ ।
ମାଛ ଆଣନ୍ତି ତିଅର ଷୋଡ଼ଷ ବାସରେ ॥
ମାଗୁର ମାଛ ଦିଅନ୍ତି ନିତି ଦେବୀ ବଳି ।
ପାଆନ୍ତି ପର୍ବ ପ୍ରସାଦମାନ କେତେ ଭଳି ॥
ଏଥିପାଇଁ ଜମିବାଡ଼ି ବହୁ ପରିମିତେ ।
ଭୋଗ କରନ୍ତି ତିଅର କୁଳ କ୍ରମାଗତେ ॥

## ଦରଜି ସେବା

ଛତି ତରସ ପତାକା ଆଲଟ ଚାମର ।
ରଥ ମଣ୍ଡଣି ଚାନ୍ଦୁଆ ଯେ ମେଘ ଡମ୍ବର ॥
କନାର କାମ ଯେତେକ ଦିଅନ୍ତି ଦରଜି ।
ତାହି ପତ୍ର କ୍ରମ କରି ଦେଖନ୍ତି ମରଜି ॥
ଏଥି ଲାଗି ଜମି ବାଡ଼ି ବହୁ ପରିମିତେ ।
ଭୋଗ କରନ୍ତି ଦରଜି କୁଳ କ୍ରମାଗତେ ॥

## ଗଣକ ସେବା

ନିତି ବାବାଙ୍କ ଛାମୁକୁ ଆସି ଜଉତିଷ ।
ହାତେ ସପତାଙ୍ଗ ପାଞ୍ଜି ଲକ୍ଷେ ଜିଉତିସ ॥
ପର୍ବ ପର୍ବାଣି ଗ୍ରହଣ ଯାତ୍ରା ଉପରାଗ ।
ଯାବତ ତିଥି ବୃତ୍ତାନ୍ତ ପଢ଼ିବ ଯେ ଅଗ ॥
ଦୋଳ ପୂର୍ଣ୍ଣିମାରେ ନୂଆ ସାଲ ପଞ୍ଜିକାହେ ।
ନୂତନ ବେଷ ଦକ୍ଷିଣା ପ୍ରସାଦଟି ପାଏ ॥
ଏଥିଲାଗି ଜମି ବାଡ଼ି ବହୁ ପରିମିତ ।
ଭୋଗ କରନ୍ତି ଜ୍ୟୋତିଷୀ କୁଳ କ୍ରମାଗତେ ॥

୬ଷ ଲହ ସମାପ୍ତ

# ସପ୍ତମ ଭାଗ

## ମନ୍ଦିର ଅଫିସ

ମନ୍ଦିର ବେଢ଼ା ବାହାର ସୀମା ପୂର୍ବ ଦିଗେ ।
କୋଠା ବାଡ଼ି ଉତ୍କୃଷ୍ଟ ମନ୍ଦିର ଅଫିସ ॥

ତହିଁ ଶ୍ରେଷ୍ଠ କର୍ମଚାରୀ ସୁପରଭାଇଜର ।
ଅଧସ୍ତନ କର୍ମଚାରୀ ନାମ ମୋହରିର ॥

ଦୁଇଟି ପିଅନ ଅଫିସରେ ଥାନ୍ତି ସଦା ।
କଉଣସି କାମେ ଅବହେଳା ନୁହେଁ କଦା ॥

ସେଥିପାଇଁକି ପାଆନ୍ତି ମାସିକ ବେତନ ।
ନିଜ କାର୍ଯ୍ୟେ ଲାଗିଥାନ୍ତି କରି ସୁଯତନ ॥

ମନ୍ଦିରେ ଛନ୍ତି ସେବକ ଯେତେ ଖଞ୍ଜାଦାର ।
ପୂର୍ବରୁ ସର୍ବ ରେକଡ଼ କାଗଜ ପତର ॥

ସଞ୍ଜ ଯୋଗାଣ ବିଭାଗ ଆଲମିରାମାନଙ୍କ ।
ରହିଅଛି କେତେ ବହି ହୋଇ ଥାକ ଥାକ ॥

ପୁରାତନ ଖସଡ଼ାରୁ ଯାହା ଯାଏ ଜଣା ।
ସେବାୟତ ଠାରୁ ଅସୁଲ ହୁଏ ଟଙ୍କାର ଖଜଣା ॥

ପରସ୍ପର ମଧ୍ୟେ କଳି ସେବକେ ଗୁହାରି ।
କରନ୍ତେ ବୁଝନ୍ତି ମନ୍ଦିରର କର୍ମଚାରୀ ॥

ଯାନି ଯାତ୍ରା ପୁଣ୍ୟ ପର୍ବ ବରଷ ଯାକର ।
ସମସ୍ତ ଖର୍ଚ୍ଚ ବୁଝନ୍ତି ସୁପରଭାଇଜର ॥

ଅନୁସରଣିଆ ଯେତେ ରହନ୍ତି ଦେଉଳେ ।
ତାଙ୍କ ଜିନିଷ ପତର ରଖନ୍ତି ମନ୍ଦିର ॥

ହୁକୁମ ପାଇଁଲେ ଚିହ୍ନି ନିଅନ୍ତି ଯା ମାଲ ।
ଏହିପରି ମନ୍ଦିରର ନାନା ହାଲ ଚାଲ ॥

ଭେଟି ଯେତେକ ଜିନିଷ ମନ୍ଦିରେ ରଖନ୍ତି ।
ଯଥା କାଳେ ବିକ୍ରି ବ୍ୟବହାରରେ ଲଗାନ୍ତି ॥

ବେନିୟମ ଅନାଚାର ମନ୍ଦିରେ ଘଟିଲେ ।
ଲେଖ ଗତ ବିଷୟରେ କିଏ ସେ ଠକିଲେ ॥

ରୀତି ମତେ କରଯାଏ ତାର ପ୍ରତିକାର ।
ଲଂଘିବାକୁ ତାହା କରମତି ଅଛି କାର ॥

ଯାନି ଯାତ୍ରାମାନଙ୍କରେ ଦୋକାନର ବଟୀ ।
ଅସୁଲ କରନ୍ତି କର୍ମଚାରୀମାନେ ଖଟି ॥

ଯଜମାନ ଖେଳୁଁ ଚାରି ଅଂଶେ ଏକଅଂଶ ।
ମୂଲ୍ୟ ଆକାରରେ ନିଅନ୍ତି ମନ୍ଦିର ଟିକସ ॥

ଚଉଦ ପାଲି ଯାତରା ଧାର୍ଯ୍ୟ ମତେ ଫିସ ।
ବାବାଙ୍କ ଫଣ୍ଡ ନିଅନ୍ତି ମନ୍ଦିର ଅଫିସ ॥

ସକଳ ବିଷୟ ବୁଝି ସୁପରଭାଇଜର ।
ଜଣାନ୍ତି ସଦରେ ଦେବୋତ୍ତର ମ୍ୟାନେଜର ॥

ନୟାଗଡ଼ ଦେବୋତ୍ତର ବିଭାଗର ସୀମା ।
ରଖାଯାଇ ଅଛି ସବୁ ମ୍ୟାନେଜର ଜିମା ॥

ସେ ହାକିମ ବୁଝି ସୁଝି କରନ୍ତି ମୀମାଂସା ।
ସାମୟିକ ଆସି ଏଥି ରହି ଦିବା ନିଶି ॥

ମେନେଜରଙ୍କର ଦ୍ୱାରା ଯାହା ସମାଧାନ ।
ନହୁଏ ଜଣାନ୍ତି ଯାହାଙ୍କର ସନ୍ନିଧାନ ॥

ସେହୁ ବହୁ ଦର୍ଶୀ ଜନ୍ମଭୂମି ଓଡ଼ିଶାରେ ।
ଦେବୋତ୍ତର ବିଭାଗୀୟ ଶ୍ରୀ କମିଶନର ॥

ବିଭାଗର ହର୍ତ୍ତା କର୍ତ୍ତା ବିହିତ ବିଚାର ।
ଶେଷ ନିଷ୍ପତ୍ତି କରନ୍ତି ଧର୍ମ ଅବତାର ॥

## ମହିମା
## ସର୍ପଘାତ ମୁକ୍ତି

ବାଣପୁର ମୁଣ୍ଡକରେ କୃଷକ ସନ୍ତାନ ।
ଧାନ ଚକି ଭଙ୍ଗେ ବିଲେ କାଳ ଅପରାହ୍ନ ॥

ଗଗନରେ ଶ୍ରାବଣର ଘନ ଥିଲା ଘୋଟି ।
କାହୁଁ ଆସିଲା ସେ କୋଢଥିଆ ନାଗ ଗୋଟି ॥

ଖୁବୁଣ୍ଟି ଚଢ଼ି ଗର୍ଜିବା ବାଳକ ପିଠିରେ ।
ଉଠି ଉପରେ ଡାହାଣ ହାତ ଆଙ୍ଗୁଠିରେ ॥

କଥଣ ଭବି ଦରାଣ୍ଡି ଦିଅନ୍ତେ ସେ ପିଲ ।
ବେଳେ ଝେଟ ମାରି ପାଣି ବିଲେ ପଳାଇଲ ॥

ଲେଉଟି ଗୁହିଁଲ ନାଗ ସାପ ଖରତରେ ।
ପଳାଇ ଯାଉଛି କାହିଁ ନ ରହି ଭିତରେ ॥

ପାଖ ବିଲେ କରୁଥିଲେ କେତେ ଲୋକ ହଳ ।
କହିଲା କାତର ଭାବେ କରି କୋଳାହଳ ॥

ଦେଖ ଭାଇ ମୋ ପିଠିରେ ଚଢ଼ି ଏହି ନାଗ ।
ଆଉଁସନ୍ତେ ବେଳେ ଝେଟ ଦେଇ ବହି ରାଗ ॥

ପଳାଇ ଯାଉଛି କେଡ଼େ ବେଗେ ପାଣି ବିଲେ ।
କେତେକ ବ୍ୟକ୍ତି ଆସିଣ ପ୍ରତ୍ୟେକ୍ଷେ ଦେଖିଲେ ॥

ବୋଇଲେ ବାବୁ ବେଗେ ପଳା ନିଜ ଘର ।
ଜଣାଇ ଦିଅ ଯା ବାପ ମାଆଙ୍କ ଆଗରେ ॥

ଦଂଶିଲ ଗୋଖୁର ସର୍ପ ଜୀବନେ ଭରଷା ।
ରହିବା ପରି ସମ୍ଭବ ନୁହେଁ ଦୁସ୍ତଦଶା ॥

ଶୁଣି ତାଟକା ଛାନିଆ ହୋଇ ଚଷା ପୁଅ ।
ଧାଇଁଲ ଘରକୁ ଆକ୍ଷି ପକାଇଣ ଲୁହ ॥

ବଂଚି ନପାରିବି ମୁହିଁ ଶୁଣ ତାତ ମାତଃ ।
ବିଲେ ବେଳେ ହେଲେ ମୋର ନାଗ ସର୍ପଘାତ ॥

ଏତେ ବୋଲି ଭୂମିପରେ ପଡ଼ିଲ ଜଗ୍ଧଡ଼ି ।
ମୁଣ୍ଡ ଭ୍ରମ ବୁକୁ ଦମ ଦମ ମୁଖ ମାଡ଼ି ॥

ଗୋଟିଏ ମାତ୍ର ତନୟ ବୁଢ଼ା ବୁଢ଼ୀଙ୍କର ।
ବେଳ କ୍ଷତ ଦେଖି ଚେତା ବୁଡ଼ିଗଲ ଖର ॥

ପାଇ ପଡ଼ୋଶୀଏ ଆସି ଦେଖିଲେ ସେ କଥା ।
କି କରିବେ ଭାବି ସର୍ବେ ଘୂରାଇଲେ ମଥା ॥

ସେ ଗାଁରେ ଠୁଣୁ ଠୁଣୁକିଆ ବୈଦ୍ୟ ଜଣେ ।
ଥିଲେ ତାଙ୍କୁ ଡକାଇଲେ କୃଷକ ଗହଣେ ॥

ସକଳ ବିଷୟ ଶୁଣି ବୋଇଲେ ବଇଦ ।
ସର୍ପ ଘାତପାଇଁ କାହିଁ ମୋ ପାଖେ ଔଷଧ ॥

ତହୁଁ ସମସ୍ତେ କହିଲେ କବିରାଜ ପୁଅ ।
ଯାହା କିଛି ଅଛି ଦିଅ ଆଗେ ଟଙ୍କା ନିଅ ॥

ଉପରି ଟଙ୍କା ପଇସା ଦରକାର ନାହିଁ ।
ଯାହା ଜାଣିଛି ତା ନିଅ ପିଆଅ ବଟାଇ ॥

ସେ ଜାଣି ଥିବାର ଚେରଟିକିଏ ସେ ଦେଲେ ।
ଚିକ୍କଣ କରି ଶିଳପା ଶିଳେ ବଟାଇଲେ ॥

ନୟାଗଡ଼ର ଶରଣକୁଳେ ଲଡୁକେଶ ।
ଅନାଦି ସିଦ୍ଧ ସେ ବ୍ରହ୍ମ ଲିଙ୍ଗ ଶ୍ରୀମହେଶ ॥

ଟାଙ୍କୁ ଚିନ୍ତାକରି ସର୍ବେ ହୋଇ ଏକମତି ।
ପିଆଇ ଦିଅ ଜିଆଇ ଦିଅନ୍ତୁ ଝଟତି ॥

ଏତେ କବି ଓଉଷଧି ପିଆଇଣ ଦେଲେ ।
ଠକ ହୋଇ ବଉକତି ବେଢ଼ିଣ ବହିଲେ ॥

କ୍ରମେ କ୍ରମେ ସର୍ପଘାତୀ ହୋଇଲ ବେହୋସ ।
ବୁକୁ ଦକୁ ମାରେ ଅଳପ ନିଃଶ୍ୱାସ ॥

ଜାଣିଲେ ଦେଖଣାହାରୀ ସାମାନ୍ୟ ସମୟେ ।
ବଂଞ୍ଚି ନପାରିବ ପିଲା ମରିବ ନିଶ୍ଚୟେ ॥

ଶ୍ରାବଣ ମେଘ ଅନ୍ଧାରେ ମେଘ ଆସେ ମାଡ଼ି ।
ଯେଝା ଘରେ ଗଲେ ଲୋକେ ସର୍ପଘାତୀ ଛାଡ଼ି ॥

ଦେଖି ଏହା ବାପ ମାଆ ଶୋକରେ ଅଧୀର ।
ଗୁଣ ବାହୁନି କାନ୍ଦନ୍ତି ପଡ଼ି ଜୋଡ଼ି ଶିର ॥

ମୁହୂର୍ତ୍ତ ଉପରାନ୍ତ ଶେଷେ ବାଉଳି ଗୁଉଳି ।
ବସିପଡ଼ିଲ ବାଳକ ହୋଇଣ କାଉଳି ॥

ଦେଖି ପିତା ମାତା କହି ରଙ୍କୁଣୀ ରତନେ ।
କି ହେଲ କି ହେଲ ବୋଲି ଦୁଃଖୀର ଜୀବନ ॥

ଶୋଷ ଶୋଷ କହିବାରୁ ପିଆଇଲେ କ୍ଷୀର ।
ଆରମ୍ଭିଲ ଆସ୍ତେ ଆସ୍ତେ ପିଲ ମୃଦୁ ଗୀର ॥

ଋଷି ଜଣେ ମୁଣ୍ଡେ ଜଟା ମୁଖେ ନିଶ ଦାଢ଼ୀ ।
ବିଭୂତି ଭୂଷଣେ ହେଲେ ହାତେ ଶୂଳ ବାଡ଼ି ॥

ବୋଇଲେ କେତେ ଶୋଇଛୁ ଉଠରେ କୁମର ।
କାନ୍ଦି ଅଥୟ ହେଲେଣି ବାପ ମା ତୋହର ॥

କି ସୁନ୍ଦର ସେ ସେ ମୂରତି ପାଶୋରିବି କାହିଁ ।
ଏବେ ତେଜୋବନ୍ତ କେଉଁଠାରେ ଦେଖି ନାହିଁ ॥

ସାଇ ପଡ଼ୋଶୀଏ ଜାଣି ସର୍ବେ ଆସିଲେ ।
କି ହେଲା କହ ତ ବାବୁ ଚଞ୍ଚଳ ଭଷିଲେ ॥

ଶୁଣି ସମସ୍ତେ ସେକଥା ହୋଇଗଲେ କାବା ।
ସାକ୍ଷାତ ଶରଣକୂଳ ସେହି ଲଡ଼ୁ ବାବା ॥

ବସାଇଲେ ଛତ୍ରକାର ଲିଙ୍ଗ ମୃତ ଘଟ ।
ସୁସ୍ଥ ହେଉ ପଛ ଯିବ ପ୍ରଭୁଙ୍କ ନିକଟ ॥

ଚୂର୍ଣ୍ଣ ଆରମ୍ଭ ହୁଅନ୍ତେ ମାସକର ପରେ ।
ପହଞ୍ଚିଲେ ତିନି ପ୍ରାଣୀ ଶରଣକୂଳରେ ॥

ଠାକୁରଙ୍କୁ ଦେଖି କହିଗଲେ ପୂର୍ବ କଥା ।
ଧନଟିକି ଜୀବଦାନ କଲ ପଞ୍ଚମଥା ॥

କିଦେଇ ସୁଝିବୁ ଦେବ ତୁମ୍ଭ ଉପକାର ।
ଋଣୀ ହେଲୁ ଜୀବ ଥିବା ଯାଏଁ ମହେଶ୍ୱର ॥

ବହୁ ଭେଟ ଭିଆଇ ବିଭୁଙ୍କୁ ପୂଜିଲେ ।
ସାଷ୍ଟାଙ୍ଗ ପ୍ରଣାମ କରି ଘରକୁ ଫେରିଲେ ॥

ଏହିପରି ବାବାଙ୍କର ଅତୁଲ୍ୟ ମହିମା ।
ନର ଦେହେ କେହି ଠଉରାଇବ ସେ ସୀମା ॥

## ମହିମା ଲଡ଼ୁ ପଣ୍ଡା କାହାଣୀ

ପୂର୍ବେ ଲଡ଼ୁ ବଡ଼ପଣ୍ଡା ଶରଣକୂଳରେ ।
ପୂଜା କରନ୍ତି ବାବାଙ୍କୁ ବଡ଼ଦେଉଳରେ ॥

ଏ ପଣ୍ଡାଙ୍କୁ ପୂଜା ପାଠ କିଛି ଜଣା ନାହିଁ ।
ଶିଖିଥାନ୍ତି ପୂଜା ଠାର ଆକ୍ଷି ନାକ ଛୁଇଁ ॥

ଠାକୁରଙ୍କୁ କହୁଥାନ୍ତି ଶୁଣ ଟୁ ଲଡ଼ୁଆ ।
ମୋର ବୋଲ କର ପଛେ ନ ହେବୁ ଅଡୁଆ ॥

ଖାଇଦେ ଖେଚେଡ଼ି କ୍ଷୀରୀ ତରକାରି ଖଜା ।
ଆମ୍ବିଳା ଷାକେର ପୁଳି ବଡ଼ି ଶାଗ ଭଜା ॥

ସଜ ଗୁଆ ଘିଅ ଦିଆ ହୋଇଛି ତିଆରି ।
ଦିଶୁ ନାହିଁ କି ପଥର ଆକ୍ଷିକି ନିଆରି ॥

ବେଗେ ବେଗେ ଭୁଞ୍ଜି ଦିଅ ମନବୋଧ କରି ।
ଏହି ଲଗେ ଲୋକ ବୋହି ନେବ ପଡ଼ିଆରୀ ॥

ଶୀଘ୍ର ଖାଉ ନାହୁଁ କିଆଁ କରୁଅଛୁ ମଠ ।
ସବୁଦିନେ ଜାଣେ ମୁହିଁ ତୋର ଏକା ଶଠ ॥

ବଡ଼ ବଡ଼ ଗୁଣ୍ଡା ଚଳି ବଳି ଗିଳି ଯାଅ ।
ଏହିକ୍ଷଣି ନ ରହିବ କିଛି ଜାଣି ଥାଅ ॥

କହି କହି ନିତି ମୁହିଁ ହେଉଛି ହାଲିଆ ।
ଭଲ କଥାଟାକୁ ତୁହି ମଣୁଛୁ ଲଳିଆ ॥

ପେଟ ପୂରଇ ଖାଇଥା ନୁହ ଦରଖିଆ ।
ବାସନା ପାଣି ଆଞ୍ଚୋଇ ଲଗି ହୋ ବିଡ଼ିଆ ॥

ଧୂପ ଦୀପ ଦେବାପାଇଁ ଆସନ୍ତେ ସନ୍ଧ୍ୟାରେ ।
ଚୁନିହୋଇ ଯାନ୍ତି ତାଙ୍କୁ ଦେଖିଲେ ଦୁଆରେ ॥

କାଳକ୍ରମେ ଏହି କଥା ହୋଇଲା ପ୍ରକଟ ।
କହିଲେ ସେବକେ ଯାଇ ପରୀକ୍ଷା ନିକଟ ॥

ସେ କାଳରେ ପରୀକ୍ଷକ ମନ୍ଦିରେ ମାଲିକ ।
ଜଣାଇଲେ ତାଙ୍କ ପାଖେ ସବୁ କଥା ଠିକ ॥

ଲୁଚି ରହି ଦେଉଳରେ ପରିଖା ଜାଣିଲେ ।
ଲଡ଼ୁ ବଡ଼ ପଣ୍ଡାକୁ ସେ ଡକାଇ ଆଣିଲେ ॥

କହିଲେ ପୂଜା ପାଠତ ସବୁ ଜାଣ ପଣ୍ଡା ।
ଠାକୁରଙ୍କୁ ଖୁଆଉଛ ଭେଟ ଗୁଣ୍ଡା ଗୁଣ୍ଡୀ ॥

ଯାଅ ଆଜିଠୁଁ ତୁମ୍ଭଙ୍କୁ ମନ୍ଦିର ବାସନ୍ଦ ।
ଆଜୀବନ ଯାଏଁ ନୁଡ଼ା ପୂଜା ସେବା ବନ୍ଦ ॥

ଏହା ଶୁଣି ପଣ୍ଡା ଦୁଃଖେ ଚଳେ ଗଲ ଘରେ ।
ଜଣାଉଥାଏ ଗରିବ ଆକୁଳ ଅନ୍ତରେ ॥
ଏହିପରି କେତେ ଦିନ ହୋଇଗଲା ଶେଷ ।
ରତ୍ରେ ସ୍ୱପ୍ନେ ପରୀକ୍ଷାଙ୍କୁ କହିଲେ ମହେଶ ॥
କିରେ ପରୀକ୍ଷକ ଲଡ଼ୁ ପଣ୍ଡା ମୋ ଭକତ ।
କିପାଁ ସେବା ପୂଜା କରଉଛୁ ତା ତ୍ୟକତ ॥
ସେହି ଗଲା ଦିନୁଁ ମୁହିଁ ଅଛି ଉପବାସେ ।
କାଲି ଖୁସାମତି କରି ଆଣ ମୋର ବାସେ ॥
ନୋହିଲେ ତୋର ପରିଛା ପଣ ଛଡ଼ାଇବି ।
ବଡ଼ଦେଉଳରୁ ମାଡ଼ ମାରି ତଡ଼ାଇବି ॥
ଭାଙ୍ଗିଲା ନିଦ ପରିଛା ଚମକି ଉଠିଲେ ।
ଲଡ଼ୁ ପଣ୍ଡା ଝାଟିଘରେ ଝଟତି ଛୁଟିଲେ ॥
କହିଲେ ତୁମେ ମହତ ନଥିଲି ମୁଁ ଜାଣି ।
ଧରୁଛି ତୁମ୍ଭର ବିପ୍ର ବେନି ପାଦ ପାଣି ॥
ଯାଅ ଆଜିଠାରୁ କର ନିଜ ସେବା ପୂଜା ।
ବାଧା ଦେଇ ନ ପାରିବେ ରଜା କି ପରଜା ॥
ଶୁଣିଗଲେ ପଣ୍ଡା ହୋଇ ଦୋଷରୁ ଖଲାସ ।
ନିଜ କାମେ ଲାଗିଗଲେ ମନରେ ଉଲ୍ଲାସ ॥
ଏହିପରି ବାବାଙ୍କର ଅତୁଳ ମହିମା ।
ନର ଦେହ ବହି ଠଉରାଇବ କେ ସୀମା ॥

## ରାଜଗୃହେ ପୁତ୍ର ଲାଭ

ବ୍ରଜବଲ୍ଲଭ ମାନ୍ଧାତା ନୟାଗଡ଼ ରାଜା ।
ଦାଶରଥି ଜଗଦେବ ତାଙ୍କ ଅବରଜ ॥
ଦୁଇ ଭାଇ ବୟସରେ ହେଲେ ଆସି ବୁଢ଼ା ।
ପୁଅ ଝିଅ କିଛି ନାହିଁ ଦୁହେଁ ଆଣ୍ଠୁ କୁଢ଼ା ॥
ଅଚଳାଚଳ ସମ୍ପଦ ଲାଗେ ବିଷ ପିତା ।
ଦେହକ ଗଲେ କେ ନ ଡାକିବେ ପିତାମାତା ॥

ବାବାଙ୍କର ସେବକରୁ ଏକ ଭକ୍ତ ମାଳି ।
ଗୁହାରିଆ ପକାଇଲେ ପୁତ୍ର ଲଭ ଲଭି ॥
ଦିବା ରାତ୍ର ମାଳି ବୁଢ଼ା କିଛି ହିଁ ନଖାଇ ।
ମୁଖଶାଳେ ପାଦୋଦକ ପିଇ ପଡ଼ିଥାଇ ॥
ଏମନ୍ତେ ପଞ୍ଚବିଂଶ ଦିନ ରାତି ଭୋଗ ।
ବୁଢ଼ା ମାଳି ମରିବାଟା ପଡ଼ିଗଲା ଯୋଗ ॥
ପ୍ରାଣବାୟୁ ପହଞ୍ଚିଲା ଆସି କଣ୍ଠତଟ ।
ଅକସ୍ମାତ ପାହାନ୍ତି କି ଛାଡ଼ିଲା କୁହାଟ ॥
ଶୋଇଥିଲେ ଆଉ ଘରେ ଦେଉଳ ଜଗାଳି ।
ପାଶେ ମିଳିଗଲେ ସର୍ବେ ହୋଇ ହାଲ ହୋଳି ॥
କିସ କିସ ପଚାରନ୍ତେ ସେବକେ ପ୍ରସନ ।
କହେ ବୁଢ଼ା ଆଜି ବାବା ହୋଇଲେ ପ୍ରସନ ॥
କିଛି ନ ପଚାରି ମୋତେ ବସାଇ ଖଟିଆ ।
ନେଇଯାଅ ରାଜବାଟୀ ହଜାରି ବେଠିଆ ॥
ଶୁଣି ସେକ୍ଷଣି ବୁଢ଼ାକୁ ନଅରକୁ ନେଲେ ।
ହୁରି ଶୁଣି ରଜା ରାଣୀ ଜାଗରତ ହେଲେ ॥
ଗାଦିରେ ବସାଇ ବୁଢ଼ା ଯେସନ୍ତେ ରାଜା ଭୃତ୍ୟ ।
ପଚାରନ୍ତି କରଯୋଡ଼ି ହୋଇ କୃତ କୃତ୍ୟ ॥
କହ ପାଇଲକି ବାବାଙ୍କର ହୁକୁମକୁ ।
ହାତେ ମୁଠାଇଛ କିସ ଦେଲକେ ତୁମକୁ ॥
ବୋଲେ ବୁଢ଼ା ଶୁଣ ଛାମୁଁ ଅତ୍ୟନ୍ତ ଗୋପନ ।
ତିନି ପହର ରାତିରେ ଦେଖିଲି ସପନ ॥
ତ୍ରିଶୂଳ ବାଁ ହାତେ ଧରି ଏକ ଜଟାଧାରୀ ।
ତଳକୁ ପିଙ୍ଗଳ ଓହଳିଛି ନିଶ ଦାଢ଼ି ॥
ପୁନିଅ ଜହ୍ନ ପରାଏ ମାନୁଥିଲା ତନୁ ।
ଦେଖିଲି ଯା ଜାଇଥିଲେ ନ ଯିବଟି ମନୁ ॥
କଣ୍ଠରେ କୁଣ୍ଡଳ ଗଳେ ରୁଦ୍ରାକ୍ଷର ମାଳ ।
ଅଣ୍ଟାରେ ଗୁଡ଼ାଇଛନ୍ତି ଖଣ୍ଡେ ବାଘଛାଲ ॥

କହିଲେନେ ବୁଢ଼ା ! ଧର ଧର ପରସାଦ ।
ଆବିଠାରୁ କ୍ଳେଶ ଗଲା ଛାଡ଼ ହୋ ବିଷାଦ ॥
ତାହାଣ ହାତେ ଚନ୍ଦନ ଗୁଡ଼ା ଦୁଇ ଦେଇ ।
ରଜାର ଘର ମାଇପେ ଏହା ଦିଅ ନେଇ ॥
ରଜାର ଏ ଜନମରେ ପୁଅ ଝିଅ ନାହିଁ ।
ଛଅ ପୁଅ ହେଲେ ରାଜ୍ୟ ହେବ ନରସାଇଁ ॥
ଏତେକ କହି ବାବାଜୀ ହେଲେ ଅନ୍ତର୍ଦ୍ଧାନ ।
ପଞ୍ଚବିଂଶ ଦିନରେ ହେଲା ଅବଧାନ ॥
ଋଷ୍ୟଶୃଙ୍ଗ ହନିଙ୍କଠାରୁ ଚରୁବେନି ।
ଦଶରଥେ ପୁତ୍ର ପ୍ରାପ୍ତେ ଦେବା ପ୍ରାୟ ଘେନି ॥
ଲଡୁ ବାବା ମୋତେ କରିଅଛନ୍ତି ପ୍ରଦାନ ।
ଜଗଦେବ ଦମ୍ପତିଙ୍କ ଦେବି ତା ନିଦାନ ॥
ଶୁଣି ଶୁଚିବନ୍ତ ହୋଇ ସେ ଦୁଇ ପରାଣି ।
ବାବାଙ୍କୁ ଧ୍ୟାୟୀ ଭକ୍ଷିଲେ ମାଳିଠାରୁ ଆଣି ॥
କାଳକ୍ରମେ ସାମନ୍ତାଣୀ ହେଲେ ଗର୍ଭବତୀ ।
କୁଶଳେ ବେନି ବାଳକ କଲେ ଉତପତ୍ତି ॥
ବଡ଼ ଲଡଙ୍କର ଲଡୁକେଶ ନାମ ଦେଲେ ।
ସାନଙ୍କର ବୈଦ୍ୟନାଥ ନାମ ବୋଲାଇଲେ ॥
ବୁଢ଼ା ମାଳିକି ରଜାଏ ଦେଲେ ଉପହାର ।
କୁଣ୍ଡଳ କଙ୍କଣ ବୀରବଳୀ ସୁନାହାର ॥
ପଞ୍ଚ ପ୍ରକାର କପଡ଼ା ଶାଢ଼ୀ ଘୋଡ଼ା ଗାଡ଼ି ।
ଭୁଞ୍ଜିବାର ଦ୍ରବ୍ୟ ବୋଝ ଭାର ଧାଡ଼ି ଧାଡ଼ି ॥
ବହୁ ଜମି ବାଡ଼ି ଦେଲେ ବିବିଧ ସମ୍ପଦ ।
ସେବକ ରତନ ଛାମୁ ମାଳି ନାମେ ପଦ ॥
ଯେବେ ଦେବ ଦରଶନେ ଆସିବେ ରାଜନ ।
ଛାମୁଁ ମାଳି ପାଦୋଦକ ଦେବାକୁ ଭଜନ ॥
ବାବାଙ୍କ ଦରଶନକୁ ବିଜେ ହେଲେ ରାଣୀ ।
ପ୍ରସାଦ ପାଦୁକ ଦେବେ ଛାମୁଁ ମାଳିଆଣୀ ॥
ମାଳି ମାଳ୍ୟାଣୀ ପାଇବେ ପାଟ ଶୁଭବସନ ।
କୁଳ ପରମ୍ପର ଲେଖା ହୋଇଲା ଏ ସନ ॥
ରାଜ୍ୟ ରଜା ଲଡୁକେଶ ସିଂହ ମାନଧାତ୍ରା ।
ନବ ଦୁର୍ଗ ଅବନୀର ସୌଭାଗ୍ୟ ବିଧାତା ॥
ସୁନ୍ଦର ସୁଗୁଣବନ୍ତ ପରଜା ବତ୍ସଳ ।
ପଣ୍ଡିତ ଦୟାଳୁ ବଳୀ ଦାନରେ ଉଚ୍ଛଳ ॥
ବୈଦ୍ୟନାଥ ଜଗଦେବ ତାଙ୍କ ସାନ ଭାଇ ।
ନ ସରିବ ତାହାଙ୍କର ଗୁଣ ଗଣ ଗାଇ ॥
ବାବା ଅନୁଗ୍ରହେ ରଜା ହେଲେ ଏ ମୁଲକେ ।
ପୁରୁବ ପର ପୁରୁଷେ ତାହାଙ୍କ ଭୂଲୋକେ ॥
ଏହିପରି ବାବାଙ୍କର ଅତୁଳ ମହିମା ।
ନର ଦେହୀ ଠଉରାଇ, ପାରିବ କେ ସୀମା ॥

## ଅଳ୍ପାୟୁଃ ଦୀର୍ଘାୟୁଷ

ସାନଖେମଣ୍ଡି ତାଲୁକେ ସେ ଭ୍ରମରପୁର ।
ମହେଶ୍ୱର ନାମେ ଏକ ଯୁବ ଦ୍ୱିଜବର ॥
ତାର ପିତା ଜ୍ୟୋତିଷ ବିଦ୍ୟା ଧୁରନ୍ଧର ।
ସାଧି ଥିଲା ଏକମାତ୍ର ପୁତ୍ର ଜାତକର ॥
କହିଥିଲା ଗୃହିଣୀକି ଏକ ବିଂଶ ବର୍ଷେ ।
ହେବ ହତ ନିଶ୍ଚେ ସୁତ ପ୍ରବେଶି ବିଦେଶେ ॥
ବିଭା ନ କରିବା ପୁଣ ବାଇଶର ଯାଏଁ ।
ବ୍ରତୋପନୟନ କରି ତାତଗଲା କ୍ଷୟେ ॥
ଏହା ଶୁଣି ମାତା ମତି ଅତି ହିଁ କାତର ।
ଅଙ୍ଗୁଳିରେ ଦିନ ଗଣୁ ଥାଇ ନିରନ୍ତର ॥
ଜନନୀର ବ୍ୟସ୍ତ ଦେଖି କହଇ ତନୟ ।
କାହିଁକି ମା ସବୁବେଳେ ତୋ ମନ ଅଥୟ ॥
ମରିବାକୁ ଚାରି ଦିନ ଅଛିଟି ମାତର ।
ବୋଇଲା ପୁଅକୁ "ବାବୁ ! ଶୁଣ ମୋ ଉତ୍ତର ॥

ସାଧି ଅଛନ୍ତି ଜାତକ ପିତା ମୃତ୍ୟୁ ଚୋର ।
ସରିବ ସମ୍ପରି ସ୍ମରି ଦିନ ଗଲେ ମୋର ॥

କାନ୍ଦି ବସିଥିବି ପତି ପୁତ୍ର ହୀନା ହୋଇ ।
କିମିତି ଜୀବନ ଛାର ଦେହେ ବହି ମୁହିଁ ॥

ଆଗେ ମରିଯାନ୍ତି ବେକେ ଦଉଡ଼ି ଲଗାଇ ।
ନଈ କୂଅ ପୋଖରୀରେ ପଡ଼ି ବିଷଖାଇ ॥

ମାତା କଥା ଶୁଣି ପୁତା ହୋଇଲା ଚାଟକା ।
ଜକ ଜକ ଚାହେଁ ମୁହେଁ ବଚନ ଅଟକା ॥

ସେ ରାତି କିଛି ନଖାଇ ନପିଇ ଶୋଇଲା ।
ପାହାନ୍ତିଆରୁ ମାଆକୁ କିଛି ନ କହିଲା ॥

ନିରୁଦ୍ଦେଶ୍ୟେ ବାହାରିଲା ଲୁଚି ଆକୁଳରେ ।
ପହଞ୍ଚିଲା ନୟାଗଡ ଶରଣକୂଳରେ ॥

ପଡ଼ିଲା ବବା ଜୀଉଙ୍କ ପାଖେ ଗୁହାରିଆ ।
ପାର୍ବତୀ ଦେବୀ ମନ୍ଦିରେ ହୋଇ ଜୁହାରିଆ ॥

ଭିଖାରିପଡା ନିବାସୀ ଶ୍ରୋତ୍ରିୟ ବ୍ରାହ୍ମଣ ।
ମୋର ପିତା ବିଦ୍ୟାବନ୍ତ ନାମ ନାରାୟଣ ॥

ପ୍ରକାଶ ନାମ ତାଙ୍କର ବାଇଧର ଦାଶ ।
ସୁନ୍ଦରଗଡ଼ର ବନ୍ଦୀ ପ୍ରଭୁରେ ବିଶ୍ୱାସ ॥

କହିଲା ତାଙ୍କୁ ଯାବତ କଥା ବିପ୍ରବର ।
ପିଅର ବୋଇଲେ ଭଜ ଖାଇଦୁକେଶ୍ୱର ॥

ଶୁଣି ଏ ବାଣୀ ରହିଲା ତହିଁ ଦ୍ୱିଜ ପଡ଼ି ।
ହର ଗଉରୀଙ୍କି ଧ୍ୟାନ କରି ହର ଘଡ଼ି ॥

ସେଦିନ ରାତି ପାହିଲେ ହୋଇବ ଯାଗର ।
ପୁବ ନିଶୀ ପଡ଼ିବ ସେ ମରଣ ଲଗର ॥

ବେଳକୁ ବେଳ ହାଲିଆ ଦେହେ ଜ୍ଞାନ ନାହିଁ ।
ଗଅଁ ଗଅଁ ହୋଇ ଛାତି ପିଟି ହେଉଥାଇ ॥

ଶିବରାତ୍ରି ପୂର୍ବ ଦିନ ଗହଳ ଗୋପାଳ ।
ରହି ଯାଉଥାନ୍ତି ତହିଁ ଲୋକ ମାଳ ମାଳ ॥

ଯେ ଦେଖଇ ସେ ବର୍ଣ୍ଣିବ କେହି କହୁ ନାହିଁ ।
ମନ୍ଦିର ମାରା କରିବ ବିନା ମୃତ୍ୟୁ ପାଇ ॥

ଜଗିଥାନ୍ତି ମୋର ପିତା ଅନବରତରେ ।
ନରଖି ଯାତ୍ରାରେ ଗୃହ ମମତା ଚିରରେ ॥

ରାତି ଅଧକୁ ଟୁଟିଲା ଗହଳ ଚହଳ ।
ପଡ଼ିଗଲା ନିଛାଟିଆ ଲୋକ କୋଳାହଳ ॥

ତାପରେ ଉଠିଲା ବିପ୍ର ବାଛକି ଗୁଛକି ।
ଖନ ଖନ କଥା କହି ହୋଛଣ କାଢ଼କି ॥

ଦେଖିଲି ସ୍ୱପ୍ନ ଦିଜଣ କାଳିଆ ପୁରୁଷ ।
ଟାଣନ୍ତେ ମୋ ବେକେ ବାନ୍ଧି ପାଶ ବହି ରୋଷ ॥

ନଯାଉଁ ପ୍ରହାର କଲେ ମେତେ ଯୋଡ଼ି ବେତେ ।
ଦେଖନ୍ତୁ ଚିହ୍ନ ପିଠିରେ ପିଲ୍ଲ ପରିଦତେ ॥

ଆପଣେ ସ୍ୱୟଂ ଛଙ୍କରେ ତ୍ରିଶୂଳକୁ ଧରି ।
ମାରି ଗୋଡ଼ାଇଲେ ପଳାଇ ଗଲେ ଡରିଜରି ॥

କହିଲେ ତହୁଁ ଆପଣ କିଛି ନାହିଁ ଭୟ ।
ଏଣିକି ହୋଇବୁ ଦୀର୍ଘଜୀବି ତୁ ନିଶ୍ଚୟ ॥

ତହୁଁ ପିତା ପିଆଇଲେ ତାହାକୁ ପାଦୁକ ।
କହିଲେ ବଞ୍ଚିଲୁ ଘନ୍ଟୁ ଆଉ ନାହିଁ ଦୁଃଖ ॥

ପାହିଲା ରାତି ଏକଥା ହୋଇଲା ପ୍ରଗଟ ।
ଆଶ୍ଚର୍ଯ୍ୟେ ଦେଖିଲେ ପିଠି ମାଡ଼ ଚିହ୍ନ ଛାଟ ॥

ଦେଶ ବିଦେଶର ଯେତେ ସକଳ ଜାଣିଲେ ।
ଧନ୍ୟ ଧନ୍ୟ ବାବାଙ୍କର ମହିମା ଭଣିଲେ ॥

ଏହିପରି ଅଲୌକିକ ବାବାଙ୍କ ମହିମା ।
ନରଦେହ ବହି କେହି କହିବ ସେ ସୀମା ॥

## ଭକ୍ତ କବି

ଘୁମୁସର ରାଜପୁତ୍ର ଉପେନ୍ଦ୍ର ଭଞ୍ଜେ ।
ଦିବାକର ବ୍ରହ୍ମପରି କବିବର କଞ୍ଜେ ॥

ଆସିଥିଲେ ଭଡ଼୍‌ବାବାଙ୍କର ଦରଶନେ ।
ଅଟଳା ଭକ୍ତି ଗଦ୍‌ ଗଦେ ମାନସ ପ୍ରସନ୍ନେ ।।

ଦିନ ତମାମ ଠାକୁର ମନ୍ଦିରେ ବସନ୍ତି ।
ରଜନୀ ହେଲେ ଭଣ୍ଡାର ପାହାଡ଼େ ପଶନ୍ତି ।।

ଜପ ତପଃ କରି କାବ୍ୟ କବିତା ଲେଖନ୍ତି ।
ସକାଳୁ ଆସି ପୁନଶ୍ଚ ବାବାଙ୍କୁ ଦେଖନ୍ତି ।।

ଏହିପରି ବହୁ ଦିନ ତହିଁ କଟାଇଲେ ।
ନାନା ଗ୍ରନ୍ଥ କରି କବି ଶ୍ରେଷ୍ଠ ବୋଲାଇଲେ ।।

ଅଛି ଭଣ୍ଡାର ମୁଣ୍ଡିଆ ମଧ୍ୟେ ଚନ୍ଦ୍ରଖାଇ ।
ଗଭୀର କୋରଡ଼ ଲୋକ ଦେଖିବାକୁ ଯାଇ ।।

ଏହିପରି ବାବାଙ୍କର ଅମୂଲ୍ୟ ମହିମା ।
ନରଦେହ ବହି ଠଉରଇବକେ ସୀମା ।।

## ସଦାନନ୍ଦ ବ୍ରହ୍ମା

ସାଧୁଚରଣ ହୋତାଏ ଭିଖାରୀପଡ଼ାର ।
ପୂର୍ବେ ସଦାନନ୍ଦ ବ୍ରହ୍ମା ନାମେ କବିକାର ।।

ସାମନ୍ତ ସିଂହାରଙ୍କର ସେହି ଜ୍ଞାନଗୁରୁ ।
ରଚୟିତା ରାଧାକୃଷ୍ଣ ପ୍ରେମରସ ଗ୍ରନ୍ଥ ।।

ବାବାଙ୍କର କୃପାବଳେ ବହୁ ଆଲୋଚନା ।
ଲଳିତ ଗ୍ରନ୍ଥ କେତେକ କରିଲେ ରଚନା ।।

## କବିସୂର୍ଯ୍ୟ

ବଳଦେବ ରଥ କବିସୂର୍ଯ୍ୟ ବିପ୍ରବର ।
ଆସିଥିଲେ ଆଠଗଡ଼ୁ ଦର୍ଶନେ ଶଙ୍କର ।।

ବାବାଙ୍କ ଚରଣେ କରି ମିନତି କାକୁତି ।
ବଖାଣ କରିଥଛନ୍ତି କେତେ ସ୍ତୋତ୍ର ସ୍ତୁତି ।।

## ଯଦୁମଣି

ଇଟାମାଟି ଗ୍ରାମ ଯଦୁମଣି ମହାପାତ୍ର ।
ଜାଳି ଦାଣ୍ଡ ଭଳି କବି ଓଡ଼ିଆରେ ମାତ୍ର ।।

ବାବାଙ୍କ ଦର୍ଶନେ ଆସି ହୟଗ୍ରୀବ ମନ୍ତ୍ର ।
ସିଦ୍ଧି କରିଥିଲେ ବସି ଏକବିଂଶେ ଗନ୍ତ ।।

ପ୍ରବାଦ ଅଛି ତେଣିକି ବଡ଼ କବି ହେଲେ ।
ମୂଇକେ ମୂଇକେ ବୁଲି ପୌରୁଷ ପାଇଲେ ।।

## ଅନୁସରଣ

ଅନୁସରଣିଆ ଆଠକାଳି ବାରମାସୀ ।
ପଡ଼ିଥାନ୍ତି ଗୁହାରିଯା ନିଜ କ୍ଲେଶ ନାଶି ।।

ବାବାଙ୍କ ନାମେ ଶ୍ରୀଜଗନ୍ନାଥଙ୍କ ମନ୍ଦିରେ ।
ଠାକୁରଙ୍କ ଘରେ ଯେଉଁ ଥାଆନ୍ତି ମନ୍ଦିରେ ।।

ପ୍ରତିଦିନ ପ୍ରାତଃକାଳୁ ଗାଧୋଇ ପାଧୋଇ ।
କାହାକୁ ନଗ୍ରହି ଲୁଗା ଘୋଡ଼ା ଘୋଡ଼ି ହୋଇ ।।

ଭଜୁଥାଆନ୍ତି ବାବାଙ୍କୁ ନକହିଣ କଥା ।
ଦିନରାତି ଅନାହାରେ ନୁଆଇଣ ମଥା ।।

ଦିନକ ଠାବରୁ ଏକମାସ ପରିଯନ୍ତେ ।
ପଡ଼ଇ ବଜ୍ର ହୁକୁମ ଭକ୍ତି ଅନୁଗତେ ।।

ଓଡ଼ିଆ ବଙ୍ଗଳା ହିନ୍ଦୁସ୍ଥାନୀ ଯେ ତେଲେଙ୍ଗା ।
ପଡ଼ିଥାଆନ୍ତି ଅନ୍ଧବେ ହୋଇଣ ମେଡ଼େଙ୍ଗା ।।

ମାତୃଭାଷାରେ ସଭିଙ୍କି ମିଳଇ ହୁକୁମ ।
ଶୁଣିବା ଲୋକର ହୁଏ ଅକଲ ଗୁଡ଼ୁମ ।।

ସମସ୍ତଙ୍କୁ ରଜନୀରେ ସ୍ୱପନ ଆଦେଶ ।
ଦିଅନ୍ତି ବାବାଜି ବେଶେ ବାବା ଭଡ଼ୁକେଶ ।।

କାହାକୁ ବା ଶୁଣାଯାଏ ଅଶରୀରି କଥା ।
ପୂରିଲା ମନସ୍କାମନା ଧରୁ ତୋର ପନ୍ଥା ।।

କାହାକୁ ହୁକୁମ ହୁଏ ସେବକର ପୁତ୍ର ।
ପ୍ରସାଦ ଖାଇ ଯାଅ ତୋ ମନୋବାଞ୍ଛା ପୂର୍ଣ୍ଣ ।।

ଅକସ୍ମାତ ସେବକର ଘରେ ଭୋଗଥାଇ ।
ବିସ୍ମୟ ହୋଇଦିଅନ୍ତି ଯାଏ ଭକ୍ତ ଖାଇ ।।

କାହାକୁ ଆଦେଶ ହୁଏ ଚଣ୍ଡାଳ ଗୃହରେ ।
ଖପରରେ ଅନ୍ନ ଭୁଞ୍ଜି ଯାଅ ଆଗ୍ରହରେ ॥

ଏହା ନକଲେ ତୋ ବ୍ୟାଧି ନ ହେଇବ ଊଣା ।
ଯାଏ ଭକ୍ତ ଖାଏ ଭାତ ନକରିଣ ଘୃଣା ॥

ବାଂଝ ମଡ଼ୁଛି ମାଇପେ ପୁଅଝିଅ ପାଇଁ ।
ଠାକୁରାଣୀ ଘରେ ଥାଚି ପଥର ପକାଇ ॥

ଜନ୍ମଲେ ପୁତ୍ର କନ୍ୟା କାଢ଼ନ୍ତି ପଥର ।
ଯାଚିଥିବା ପଦାର୍ଥକୁ ଦିଅନ୍ତି ସତ୍ବର ॥

ଅଫଳନ୍ତି ଗଛ ଟଭ ଲଖାନ୍ତୁ କଦଳୀ ।
ସଦିଥାନ୍ତି ଦ୍ୟନ୍ତି ଯାହା ଆଗେ ଯାଏ ଫଳି ॥

ନ ଦେଲେ ତାର ପଧାତ୍ ପଡ଼ଇ ନିଶ୍ଚୟ ।
ତେଣୁ ରଖିଥାନ୍ତି ଜନେ ସଦା ଭକ୍ତିଭୟ ॥

କେ କଢ଼ାଏ ଜାଆଁବାଳ କେ ଫୋଡ଼ାଏ କର୍ଣ୍ଣ ।
କେ କରନ୍ତି ଏଥେ ବିପ୍ର ବ୍ରତୋପନୟନ ॥

କେ ଦିଏ ମୃଗ ମୟୂର ବୃକ୍ଷ ରୋପୁଗାଇ ।
କେ ଦିଏ ପାଟ ପଟନୀ ଭୂଷଣ ଲଗାଇ ॥

ଆଇଟ ଗ୍ରମର ବାନା ବୈରଖ ବିଶେଷ ।
ଘଣ୍ଟ ଘଣ୍ଟି ଥାଳି ଗଡ଼ୁ ଦିଅନ୍ତି ଅଶେଷ ॥

ଖଜା ପିଠା ଖିଲ ଦହି ଆଦି କେଉଁ ଜନ ।
ବାବାଙ୍କୁ ନିବେଦି କରେ ବ୍ରାହ୍ମଣ ଭୋଜନ ॥

ରଜ ଗଜୁଡ଼ା ଆସନ୍ତି ଭବି ପ୍ରଭୁ ମର୍ମ ।
ବ୍ରାହ୍ମଣମାନେ କରନ୍ତି କେତେ କର୍ମ ଧର୍ମ ॥

ଏପରି ମନ୍ଦିର ବାବାଙ୍କର କାର୍ଯ୍ୟ ଯେତେ ।
କହି ପାରିବାକୁ କେହି କ୍ଷମ ହେବ କେତେ ॥

କେ କହିପାରିବ ବିଭୁ ମହିମା ପ୍ରଖର ।
ଦଦର ନାଦେ ଯେସନେ ସାତ ସିନ୍ଧୁ ପାର ॥

କଳାହାଣ୍ଡି ମୁରଲୀଧର ରାଜ ପୁରୋହିତ ।
ଏକମାତ୍ର ପୁତ୍ର ତାଙ୍କ ପ୍ରଧାନ ପଣ୍ଡିତ ॥

ବେଦ ବିଦ୍ୟା ବ୍ୟାକରଣ ବ୍ରହ୍ମ କର୍ମ ଆଦି ।
ରକ୍ଷିଥାନ୍ତି ସର୍ବ ଶାସ୍ତ୍ର ହୃଦୟେ ସମ୍ପାଦି ॥

ସେ ରାଜ୍ୟଟି ବନ ପର୍ବତରେ ଭରପୂର ।
ତହିଁ ରହିଥାନ୍ତି କନ୍ଧ ସାନ୍ତାଳ ଶବର ॥

ଆମ ଓଡ଼ିଆ ସନ୍ତାନେ ପରକ୍ଷା କାତର ।
ଜା ଭଲ ଗୁଣ ଦେଖିଲେ ଅସହ୍ୟ ଅପାର ॥

କୌଣସି ଉପାୟବଳେ ଯେ ବିବାଦି କଣ୍ଠ ।
ପୁରୋଧାଙ୍କ ପୁତ୍ର ମୁଖ କରି ଦେଲେ ବନ୍ଦ ॥

କେତେ ମନ୍ତ୍ର ଯନ୍ତ୍ର କଲେ ହୋଇ ସମାକୂଳ ।
ବିବିଧ ଔଷଧ ସବୁ ହୋଇଲା ବିଫଳ ॥

ଲଗିଥାଏ ଘରେ ସରବଦା ଦୁଃଖ ଶୋକ ।
ବହୁ ଦିନରେ କହିଲେ ତାଙ୍କୁ କେତେ ଲୋକ ॥

ଏହି ବିକାରକୁ ନାହିଁ କିଛି ହିଁ ଉପାୟ ।
ଯାଅ ପିତା ପୁତ୍ର ନୟାଗଡ଼କୁ ନିଶ୍ଚୟ ॥

ସେଠାରେ ଶରଣକୂଳେ ଦେବ ଲଡ଼ୁବାବା ।
ତାଙ୍କୁ ଜଣାଇଲେ ତୁମ୍ଭ ବ୍ୟାଧି ଯିବ ଅବା ॥

କିଛି ନବିଗ୍ଭରି ଶୀଘ୍ର ଚଳ ସେହି ସ୍ଥାନେ ।
ଦରଶନ କର ତହିଁ ବାବା ବିଦ୍ୟମାନେ ॥

ତହିଁ ପିତା ପୁତ୍ର ବେନି ବାହାରିଲେ ଖରେ ।
ତିନି ଦିନେ ପହଞ୍ଚିଲେ ଶରଣକୂଳରେ ॥

ଦୁର୍ଯ୍ୟୋଧନ ମହାପାତ୍ର ଠାକୁର ସେବକ ।
ତାଙ୍କ ଆଗରେ କହିଲେ ଯେତେ ଦୁଃଖ ଯାକ ॥

ଶୁଣି ପଣ୍ଡାଏ କହିଲେ ଦେବଙ୍କର ଦୟା ।
ମନ୍ଦିରେ ପଡ଼ନ୍ତୁ ପୁଅ ଏବେ ଗୁହାରିଆ ॥

ହୁକୁମ ହେବା ପର୍ଯ୍ୟନ୍ତ କେ କୁଟୁମ୍ବ ଲୋକ ।
ନ ଦେଖାଇବେ କେବେହେଁ ଥରେ ତାଙ୍କୁ ମୁଖ ॥

ଫୁଲ ଚନ୍ଦନ କର୍ପୂର ତୁଳସୀ ଦୈନିକ ।
ଠାକୁର ଲାଗି ହେବାକୁ ଦେଲେ ଖର୍ଚ୍ଚ ଠିକ ॥

ବାବାଙ୍କର ପାଦୋଦକ ଥରେ ପିଇ ମାତ୍ର ।
ପଡ଼ିରହିଲେ ଦେଉଳେ ପୁରୋଧାଙ୍କ ପୁତ୍ର ।।

ଦିନପରେ ରତି ରତି ପରେ ଦିନଗତ ।
ଏମନ୍ତେ ଛବିଶ ଦିନ ଗତ୍ତ ସମାପତ ।।

ସତେଇଶ ଦିନ ରତି ଅର୍ଦ୍ଧାଧିକ ଭୋଗ ।
ସରିଲା ବଡ଼ ସିଂହାର ବାବା ଜିଉ ଭୋଗ ।।

କିଳିଲେ କବାଟ ଗାଢ଼େ ଭିତରେ ବାହାରେ ।
ଚଳିଲେ ସେବକ ବର୍ଗେ ଥିଲେ ଯେ ଯାହାରେ ।।

ଛାଇ ନିଦ ଲାଗିଅଛି ଶୁହାରିଆ ବିପ୍ର ।
ଉପରୁ ଶୁଭିଲା ଏକ ଶୁଭ ଧ୍ୱନି କ୍ଷୀପ୍ର ।।

ତାପରେ ସେତକ କଥା ଶୁଣି ଏକଧ୍ୟାନେ ।
ଦଣ୍ଡେ ସମୟ ପର୍ଯ୍ୟନ୍ତ ରଖିଲା ତା ମନେ ।।

ଶେଷ ଡାକକୁ ଶୁଭିଲା ବାବା ଯାଅ ଯାଅ ।
ପୂରିବ ମନସ୍କାମନା ଚଞ୍ଚଳ ପଳାଅ ।।

ଅଶରୀରୀ ବାଣୀ ନୁହେଁ ନରନାରୀଙ୍କର ।
ଏମନ୍ତେ ଚିନ୍ତି ଚୌଦିଗେ ଚାହେଁ ବିପ୍ରବର ।।

ନ ଦେଖିଲା କିଛି କାହିଁ ଚୌଦିଗେ ନାହାନ୍ତି ।
କ୍ରମେ ନିଶା ଅବସାନ ହୋଇଲା ପାହାନ୍ତି ।।

କଣ୍ଠାଗତ ପ୍ରାଣେ ଆଶା ହୋଇଲା ସଂଚାର ।
ଧୀରେ ଧୀରେ ଗଲେ କ୍ରମେ ପଣ୍ଡାଙ୍କ ଦୁଆର ।।

ଦେଖି ପଣ୍ଡାଏ ଆଶ୍ଚର୍ଯ୍ୟେ ବୋଇଲେ ବାବୁ ।
ହୁକୁମ ହେଲକି ଉଠି ଆସିଲେ ସେଠାବୁ ।।

ମୁଣ୍ଡ ହଲାଇ କହିଲା ସମ୍ମତି ସୂଚନା ।
ଲେଖିଲା ବେଗେ ଡକାଇ ଆଣନ୍ତୁ ମୋ ନନା ।।

ଶୀଘ୍ର ପଠାଇଲେ ଲୋକ ବିନାୟକପୁର ।
ଏଣେ କ୍ଷୌର ହୋଇ ସ୍ନାନସାରି ଦ୍ୱିଜବର ।।

ଉପବିତ ଘେନି କଲେ ଦେବ ଦରଶନ ।
ପ୍ରବେଶିଲେ ପିତା ଚେକି ବ୍ରାହ୍ମଣ ଶାସନ ।।

ତାତ ପାଦତଳେ ସ୍ନତ କରନ୍ତେ ପ୍ରଣାମ ।
ପୁତ୍ର ଦୁରବସ୍ଥା ଦେଖି ପିତା ହେଲେ ଭ୍ରମ ।।

ବାପତ ପଣ୍ଡା ପୁଛନ୍ତି ହୁକୁମ କି ହେଲା ।
ବାବାଙ୍କର କଥା ଶୁଣି ପୁଅ ତଳେ ଲେଖି ଦେଲା ।।

ଗଲା ଅଧଣ୍ଟ ଅଧିକ ରତି ଏକ ଗଲେ ।
ଶୁଣନ୍ତେ ଚାହିଁଲି କେହି ନାହିଁ କେଉଁଠାରେ ।।

ତାପରେ ଶୁଭିଲା ତୁମ୍ଭେ ପିତା ପୁତ୍ର ବେନି ।
ଘରୁ ବାହାରିଲ ବ୍ୟବହାର ଦ୍ରବ୍ୟ ଘେନି ।।

ବିଶ୍ରାମିଲ ଜୟପୁର ପୁଷ୍କରିଣୀ କୂଳେ ।
ରୋଷାଇ ବସାଇ ଭୁଞ୍ଜି ବରଗଛ ମୂଳେ ।।

ଆସିଲ ଏଠାକୁ ବହୁ ଆଶାକରି ମନେ ।
ପଡ଼ିଲୁ ଏକାନ୍ତେ ଧ୍ୟାଇ ମୋ ଅନୁସରଣେ ।।

ଏବେ ଯାଅ ସେହି ସ୍ଥାନେ ବର ଓହଳରେ ।
ମିଳାଇ ଦୋଳିଏ ବାନ୍ଧ ଛନ୍ଦେ ବହଳରେ ।।

ପୂର୍ବ ମୁଖରେ ବସିବ ପୁତ୍ର ତାହା ଧରି ।
ପିତା ପହଣ୍ଡାଇ ବତା ସାତଥର କରି ।।

ନିଶ୍ଚୟ ତୋହର ମନୋବାଞ୍ଛା ପୂର୍ଣ୍ଣ ହେବ ।
ଏତେ କହି ମୌନ ହେଲେ ଅଶରୀରୀ ଦେବ ।।

ଶୁଣି ପଣ୍ଡାଏ କହିଲେ ହେ ବିପ୍ର ଉତ୍ତମ ।
ପ୍ରାପ୍ତ ପୁତ୍ରକୁ ବାବାଙ୍କ ଏ ବଡ଼ ହୁକୁମ ।।

ମନେ ମନାସିଲ କଥା ହୋଇବ ନିଶ୍ଚୟ ।
ଜୀବନେ ନଥିବ ଆଉ କିଛି କାହା ଭୟ ।।

ବାପପୁଅ ପଣ୍ଡାଙ୍କର ଦେଇ ଦିଅଁ ଖର୍ଚ୍ଚ ।
ସନ୍ତୋଷେ ଦକ୍ଷିଣା ଦେଲେ ଟିକେ ହୋଇ ସଚ୍ଚ ।।

ଚାଲିଗଲେ ଜୟପୁର ପୋଖରୀ କୂଳକୁ ।
ବାନ୍ଧିଲେ ସେ ଦୋଳି ଓହଳାଇ ଓହଳକୁ ।।

ପୂରବ ମୁଖେ ବସିଲା ପୁତ୍ର ବାବା ସ୍ମରି ।
ପହଣ୍ଡାଇଲେ ପିଅର ସାତଥର କରି ।।

ଓହ୍ଲାଇ କହିଲେ ପୁଅ ହେ ବାପା ମୋହର ।
ପାଟି ଫିଟାଇଣ ଦେଲେ ଶ୍ରୀଲଡ଼୍‌କେଶ୍ୱର ॥

ଜୟ ଲଡ଼୍‌କେଶ ଲଡ଼୍‌ ବାବା ଜୟ ଜୟ ।
ବ୍ରହ୍ମ ଲିଙ୍ଗ ମହେଶ୍ୱର ହେ ମହିମାମୟ ॥

ବାଟ ଯାକ ନାମ ଗୁଣ ଗାଇ ବାବାଙ୍କର ।
ଗ୍ରାମ ଅଭିମୁଖେ ହେଲେ ବେନି ଅଗ୍ରସର ॥

ଏହିପରି ବାବାଙ୍କର ଅତୁଲ୍ୟ ମହିମା ।
ନରଦେହ ବହି ଠଉରାଇବେ କେ ସୀମା ॥

## ଗ୍ରନ୍ଥାକାର ପରିଚୟ

ଶରଣକୂଳ ସଂଲଗ୍ନ ଭିକ୍ଷୁକ ପତନ ।
ହରିହରପୁର ନାମ ବ୍ରାହ୍ମଣ ଶାସନ ॥

କଶ୍ୟପଗୋତ୍ରୀ ଶ୍ରୋତ୍ରୀୟ ତହିଁ ବିପ୍ରବର ।
ଦୀନବନ୍ଧୁ ବ୍ରହ୍ମା ବିଦ୍ୟାବନ୍ତ କବିକାର ॥

ବିଧାର ସାମନ୍ତ ନବଦୁର୍ଗ ଅଧିକାରୀ ।
ଦିନେ ଯାଉଥିଲେ ଘଡ୍ରେ ଆରୋହି ସବାରୀ ॥

ଗର୍ଭିଣୀ ଗାଭୀ ଯାହାକୁ ଛାଡ଼ିଦେବ ବାଟ ।
ଖଣ୍ଡା ଥାଉଁ ହାତେ କରିଦେବେ ମୁଣ୍ଡକାଟ ॥

ତାଙ୍କୁ କହିଲେ ବିଧାରେ ଯାଉଛି ଅନ୍ଧାରେ ।
ତେଲପଳେ ନମିଳିଲ ତୁମ୍ଭକୁ ଉଧାରେ ॥

କେ କହିଲ ବୋଲି ଦେଲେ ଶବାରୀ ଅଟକାଇ ।
ବ୍ରହ୍ମା ବ୍ରାହ୍ମଣଙ୍କୁ ନେଲେ ପାଶକୁ ଡକାଇ ॥

ବ୍ରହ୍ମା ପରବେଶି ପାଶେ ଭାସେ ଥରହର ।
ବିଧାରେ ହସି ହରଷେ ଦେଲେ ପୁରସ୍କାର ॥

ସେକାଳେ ନଥିଲ ରେଳଗାଡ଼ି ବ୍ୟୋମଯାନ ।
ହରିଧାମ କରିଥିଲେ ପାଦେ ପର୍ଯ୍ୟଟନ ॥

ଆପଣାର ଅଙ୍ଗନାକୁ ସଙ୍ଗତରେ ଘେନି ।
ବହୁଦିନ ବୁଲିଥିଲେ ଭାରତ ମେଦିନୀ ॥

ଗୋଟିଏ ଲେଖାଏଁ ତାଙ୍କ ଦୁହିତା ଆତ୍ମଜ ।
ନାମ ଦେଲେ ମହାଦେବ ପଦ ପ୍ରହରାଜ ॥

ଜାଣନ୍ତି ଜ୍ୟୋତିଷ ତନ୍ତ୍ର କରମ କର୍ମାଣି ।
କରିଥିଲେ ଘୁରି ତୀର୍ଥ ଚରଣେ ଭ୍ରମଣି ॥

ତାଙ୍କର ତନୟା ଜନ୍ମ ତିନିଗୋଟି ମାତ୍ର ।
ଶେଷେ ନାରାୟଣ ନାମ ଦେଲେ ଜାତପୁତ୍ର ॥

ସୋରଡା ପଣେ ବାନ୍ଧଥା ସ୍ୱଭବ ପ୍ରକାଶ ।
ଦେହଜ ନାମ ବହିଲେ ବାଉଧର ଦାଶ ॥

ନଥିଲ ସେବେଳେ ଆଜିକାଲି ବିଦ୍ୟାଳୟ ।
ପିତାଙ୍କର ଗୁଣ ଗ୍ରାମ ସାଧିଲେ ନିଜୟ ॥

ପୃଥୁଳ ପୀବର ତନୁ ସୁନ୍ଦର ବଳିଷ୍ଠ ।
ବାଗ୍ମୀ ବିଦୂଷ ପୁରଣ ପଠନେ ବରିଷ୍ଠ ॥

ମୁହିଁ ଜ୍ୟେଷ୍ଠ ପୁତ୍ର ତାଙ୍କ ଚାରିଟି ଦୁହିତା ।
ଦଶମ ସଂସାରେ ଦେଲେ ନାମ ଦାଶରଥି ॥

ବନ୍ଧୁ ବାନ୍ଧବେ କରିଲେ ଏ ନାମକରଣ ।
ଶେଷକୁ ଦାଶ ସଜ୍ଞ ମୁଁ ବାନ୍ଧୁ ବରଣ ॥

ପିତୃ ପିତାମହଙ୍କର ଜଉତିଜ ବିଦ୍ୟା ।
ସାଧି ଶୈଶବେ ପାଇ ଯା କିଛି ସୁବିଧା ॥

ଆଧୁନିକ ଶିକ୍ଷା ଦୀକ୍ଷା ଅଳପ ପାଇଛି ।
ମାତୃଭାଷାର ଉନ୍ନତି ଯୁବକାକୁ ଇଚ୍ଛି ॥

ଏଣୁ ତେଣୁ ଗୀତ ପଦ୍ୟ ଅନେକ ଗୁଡ଼ାଏ ।
ତିଆରି ତିଆରି ଏବେ ହୋଇଛି ବୁଢ଼ାଏ ॥

ଭାବନା ଏବକୁ ହେଲ ବାବା ଦେବଙ୍କର ।
କେହି କରି ନାହିଁ କିଛି ପ୍ରସଙ୍ଗ ପ୍ରଚାର ॥

ଏତେ ବୋଲି ବହୁ ଶାସ୍ତ୍ର କଲି ଆଲୋଚନା ।
ସେବାସୀ ଗଣେ ଗଭୀର ଭବେ ଗବେଷଣା ॥

ଆଧୁନିକ ଶିକ୍ଷା ଦୀକ୍ଷା ସମ୍ପନ୍ନ ବାଳକ ।
ବେନି ଗଙ୍ଗାଧର ଗୋଦାବରୀଶ ବାଳକ ॥

ଦୁଇ ପୁତ୍ରଙ୍କର ଠାରୁ ବହୁତ ବିଷୟ ।
ବୁଝି ଲେଖିଛି ଯାବତ ଘଟନା ନିଚୟ ।।

କ୍ଷୁଦ୍ର ବୁଦ୍ଧିରେ ବିଭୁଙ୍କ ପ୍ରଜ୍ଞା ମନେ ନେଇ ।
ଶ୍ରୀଇଡ଼୍‌କେଶ ମାହାତ୍ମ୍ୟ ନାମ ଗୋଟି ଦେଇ ।।

ମହିମାମୟ ବାବାଙ୍କ ଦତ୍ତ କୃପାବଳେ ।
ପୁସ୍ତକ ଅର୍ପଣ କଲି ଶ୍ରୀଚରଣ ତଳେ ।।

ସାଦରେ ଗ୍ରହିବେ ସୁଧୀ ନ ବହିବେ ଦୋଷ ।
ଶ୍ରମ ସାର୍ଥ ହେବ ଭାବି ହୃଦୟେ ସନ୍ତୋଷ ।।

ଶରଣକୁଳ ନିବାସୀ ହେ ଇଡ଼୍‌କେଶ୍ୱର ।
ଅକିଞ୍ଚନ ମାଗୁଅଛି ଏତିକି ମାତର ।।

ବିଲୟ ପର୍ଯ୍ୟନ୍ତ ଲୟ ଥିବ ତୁମ୍ଭ ପାଦେ ।
ମିଶିଯିବ ଜୀବ ଆତ୍ମା ତହିଁ ଅପ୍ରମାଦେ ।।

ପୁନରପି ନ ମିଳିବ ମାତୃ ଗର୍ଭବାସ ।
ଏହି ବରଦାନ କରି ବିଭୋ ଦିଗବାସ ।।

ଇଡ଼୍‌ବାବା, ଇଡ଼୍‌ବାବା, ବାବା ଇଡ଼୍‌କେଶ ।
ସୁମରି ଶ୍ରୀ ଇଡ଼୍‌କେଶ ମାହାତ୍ମ୍ୟଟି ଶେଷ ।।

